# ଗ୍ରୀସ ଦେଶର ଉପକଥା





ବିଶ୍ୱ ସାହିତ୍ୟ ଗ୍ରନ୍ଥମାଳା : ସଂଖ୍ୟା-୨୧

# ଗ୍ରୀସଦେଶର ଉପକଥା

ଅନୁବାଦ :

**ଅଧ୍ୟାପକ ଶ୍ରୀଧର ଦାସ**




ଠକ-୨ : ବ୍ରହ୍ମପୁର

ପ୍ରକାଶକ :

ଶ୍ରୀ ଅଭିରମ ମହାପାତ୍ର

ଗ୍ରନ୍ଥ ମନ୍ଦିର

କଟକ-୨ : ବ୍ରହ୍ମପୁର

ମୁଦ୍ରକ :

ବିନାୟକ ପ୍ରିଣ୍ଟର୍ସ

କଟକ-୮

ଦ୍ୱିତୀୟ ମୁଦ୍ରଣ :

ଅକ୍ଟୋବର, ୧୯୭୨

ମୂଲ୍ୟ :

ଟ ୨-୦୦

# ସୂଚୀ

# ମେଦୁସାର ମୁଣ୍ଡ

ଗୋଟିଏ ରାଜ୍ୟରେ ଅନେକ ଦୁଷ୍ଟ ଲୋକ ଥିଲେ । କିଏ ପରର ଉପକାର କରି ଆନନ୍ଦ ପାଆନ୍ତି—କିନ୍ତୁ ଏମାନେ ଅନ୍ୟର ଅନିଷ୍ଟ କରି ପାରିଲେ ଖୁସି ହେଉଥିଲେ ।

ଡାନେ ଥିଲେ ଏକ ରାଜାଙ୍କ ଝିଅ । ସେ ରଜାଘରେ ମଧ୍ୟ ବଡ଼ ହୋଇଥିଲେ । ତାଙ୍କର ଗୋଟିଏ ସୁନ୍ଦର ପୁଅ ହେଲା । ପୁଅଟିର ନାମ ଦିଆଗଲା ପର୍ସିଅସ । ଡାନେ ପୁଅଟିକୁ ନେଇ ସୁଖରେ ଥିଲେ । କିନ୍ତୁ ଦୁଷ୍ଟଲୋକେ ତାଙ୍କ ସୁଖ ଦେଖି ସହି ପାରିଲେ ନାହିଁ । ସେମାନେ ମାଆ ପୁଅ ଦୁହିଁଙ୍କୁ ଗୋଟିଏ କାଠ ବାକ୍ସରେ ପୂରାଇ ସମୁଦ୍ରରେ ଭସାଇ ଦେଲେ ।

ଡାନେ ପୁଅଟିକୁ କୋଳରେ ଧରି ବାକ୍ସ ଭିତରେ ପଡ଼ିଥାନ୍ତି; ଏଣେ ବାକ୍ସ ସମୁଦ୍ର ଉପରେ ଭାସି ଭାସି ଯାଉଥାଏ । ଭାଗ୍ୟକୁ ବାକ୍ସଟି ବୁଡ଼ିଲା ନାହିଁ—ନୋହିଲେ ମାଆପୁଅ ଦୁହେଁଯାକ ବୁଡ଼ି ମରିଥାନ୍ତେ । ଏହିପରି କେତେ ଦିନ ଭାସିବା ପରେ ବାକ୍ସ ଯାଇ ଏକ ଦ୍ୱୀପରେ ଲାଗିଲା । ଏହି ଦ୍ୱୀପର ନାମ ସେରିଫସ । ଯେତେବେଳେ ବାକ୍ସ ଦ୍ୱୀପରେ ଲାଗିଲା ସେତେବେଳକୁ ଜଣେ କେଉଟ ସେଠାକୁ ଜାଲ ନେଇ ମାଛ ଧରିବାକୁ ଆସିଥିଲା । ସେ ବାକ୍ସଟିକୁ

ଉଠାଇ ନେଇ ଦେଖିଲା, ତା ଭିତରେ ଗୋଟିଏ ସ୍ତ୍ରୀ ଲୋକ ନିଜ ପିଲାକୁ ଧରି ଶୋଇଛି ।

ମାଆ ପିଲା ଦୁହିଁଙ୍କର ଭାଗ୍ୟ ଭଲ ବୋଲି କହିବାକୁ ହେବ । ଏ ଦ୍ୱୀପର ଲୋକେ ବଡ଼ ଖରାପ, କାହାର ଭଲ ଦେଖି ପାରନ୍ତି ନାହିଁ । ଏହି କେଉଟର ଭାଇ ହେଉଛି ସେହି ଦ୍ୱୀପର ରାଜା । ରାଜ୍ୟର ଲୋକେ ଯେମିତି ଦୁଷ୍ଟ, ରାଜା ମଧ୍ୟ ସେହିପରି । ମାତ୍ର ଏ କେଉଟଟିର ସ୍ୱଭାବ ଭିନ୍ନ । ସେ ପରର ଉପକାର କରିବାକୁ ସବୁବେଳେ ଆଗଭର । କାହାର ଅନିଷ୍ଟ କରିବା କଥା କେବେହେଲେ ତା ମନରେ ନ ଥାଏ । ସେ ବାକ୍ସରୁ ମାଆ ପୁଅଙ୍କୁ ବାହାର କରି ନିଜ ଘରକୁ ନେଲା ଓ ଅତି ଯତ୍ନରେ ରଖିଲା । ଦିନ ପରେ ଦିନ, ବର୍ଷ ପରେ ବର୍ଷ ଗଡ଼ି ଚାଲିଲା । ପର୍ସିଅସ ଗୋଟିଏ ସୁନ୍ଦର ବଳିଷ୍ଠ ଯୁବକ ହେଲେ । ଖଣ୍ଡା ଓ ଢାଲ ବ୍ୟବହାର କରିବାରେ ସେ ଖୁବ୍ ନାଁ ଅର୍ଜିଲେ ।

ଏହି କେଉଟର ଭାଇ ପଲିଡେକ୍ଟସ ସେ ଦ୍ୱୀପର ରାଜା । ସେ ଦେଖିଲା, ପର୍ସିଅସ ଗୋଟିଏ ବଳିଷ୍ଠ ଯୁବକ । ତାଙ୍କର କପରି ଅନିଷ୍ଟ ହେବ ସେଥିପାଇଁ ସେ ଉପାୟ ଚିନ୍ତାକଲା । ଗୋଟାଏ ଅତି ବିପଜ୍ଜନକ କାମ କରିବାକୁ ତାଙ୍କୁ ପଠାଇବ ବୋଲି ସେ ସ୍ଥିର କଲା ।

ଏହାପରେ ବହୁତ କାଳ ପରେ ପଲିଡେକ୍ଟସ ଦିନେ ପର୍ସିଅସଙ୍କୁ ଡକାଇ ଆଣି କହିଲା, "ଦେଖ ପର୍ସିଅସ, ତୁମକୁ ଆମେ ବହୁତ ସାହାଯ୍ୟ କରିଛୁ । ମୋ ଭାଇ ତୁମକୁ ଓ ତୁମ ମାଆକୁ ପାଳି ଆସିଅଛନ୍ତି । ଏବେ ତୁମେ ଆମ ପାଇଁ କଷ୍ଟ କରିବା ଦରକାର ।"

ପର୍ସିଅସ ଉତ୍ତର କଲେ, "ମହାରାଜ, ଆପଣ ଏ ଦ୍ୱୀପର ରାଜା । ମୁଁ ଆପଣଙ୍କଠାରେ ବିଶେଷ ଋଣୀ । ଆପଣ ଯାହା

ଆଦେଶ ଦେବେ ତାହା ନିଶ୍ଚୟ କରିବ । ଏପରିକି ସେଥିରେ ପ୍ରାଣ ଗଲେ ମଧ୍ୟ ମୁଁ ତାହା କରିବାକୁ ପ୍ରସ୍ତୁତ ।"

ପଲିଡେକ୍ଟସ କହିଲା, "ତୁମେ ଯୁବକ, ଘରେ ବସି ରହିବା ତୁମ ପକ୍ଷରେ ସୁନ୍ଦର ନୁହେଁ । ମୁଁ ତୁମକୁ ଗୋଟିଏ କାମ କରିବାକୁ ପଠାଇବାକୁ ଚାହେଁ । ଏଥିରେ ତୁମର ଧୈର୍ଯ୍ୟ, ସାହସ ଓ ବୁଦ୍ଧିର ଉପଯୁକ୍ତ ବ୍ୟବହାର କରିବାର ସୁବିଧା ପାଇବ । ତୁମେ ଶୁଣିଥିବ, ନିକଟରେ ମୋର ବିବାହ ହେବ । ରାଜକନ୍ୟା ହିପୋଡେମିଆଙ୍କୁ ବିବାହ କରିବା ପୂର୍ବରୁ ସେ ମୋଠାରୁ ଗୋଟିଏ ଉପହାର ଚାହାନ୍ତି । ଅନ୍ୟ କୌଣସି ଉପହାରରେ ସେ ସନ୍ତୁଷ୍ଟ ହେବେ ନାହିଁ । ତୁମେ ଜାଣିଥିବ, ଆମ ରାଜ୍ୟରେ ତିନୋଟି ରାକ୍ଷସୀ ଅଛନ୍ତି । ସେଥିରୁ ଗୋଟିକର ନାମ ମେଦୁସା । ସେହି ମେଦୁସାର ମୁଣ୍ଡଟି ତାଙ୍କୁ ଉପହାର ଦେବାକୁ ହେବ । ତୁମେ ଯାଇ ମେଦୁସାର ମୁଣ୍ଡଟି କାଟି-ଆଣି ମୋତେ ଦେବ ।"

ପର୍ସିଅସ କହିଲେ, "ଏପରି ଗୋଟିଏ କଠିନ କାର୍ଯ୍ୟର ଭାର ନେବା ମୋର ଭାଗ୍ୟ । ମୁଁ କାଲି ମେଦୁସାର ମୁଣ୍ଡ ଆଣିବାକୁ ଯିବି ।"

ରାଜା ପର୍ସିଅସଙ୍କୁ ଆହୁରି ସାବଧାନ କରି ଦେଲେ ଯେ ମୁଣ୍ଡଟି ଏପରି କାଟି ଆଣିବାକୁ ହେବ, ଯେପରି ସେଥିର କୌଣସି ଅଂଶ ଖଣ୍ଡିଆଖାବରା ନ ହୁଏ ।

ପର୍ସିଅସ ରାଜାଙ୍କ ପାଖରୁ ଚାଲିଗଲେ । ରାଜା ହସି ହସି ମନକୁ ମନ କହିଲେ, "ଟୋକାଟା ଜାଣିନାହିଁ, ତା ମରଣ ନିକଟ ହେଲାଣି । ମେଦୁସା ପାଖକୁ ଯିବା ତ ଅସମ୍ଭବ; ଏ ତାକୁ ମାରି ତାର ମୁଣ୍ଡ ଆଣିବ କିପରି ?"

ଏଥି ଭିତରେ ଦେଶ ତମାମ ରାଷ୍ଟ୍ର ହୋଇଗଲା, ପର୍ସିଅସ୍ ମେଡୁସାର ମୁଣ୍ଡ କାଟି ଆଣିବାକୁ ଯାଉଛନ୍ତି । ରାଜା ଯେପରି ଖରାପ ଲୋକ, ତାଙ୍କ ପ୍ରଜାମାନେ ତ ତାହାଁରୁ ଊଣା ନୁହନ୍ତି । ଦାନେ ଓ ପର୍ସିଅସଙ୍କ ଉପରକୁ ନଷ୍ଟସୃଷ୍ଟ ବିପତ୍ତି ମାଡ଼ି ଆସିଲା, ଏହା ଭାବି ସେମାନେ ଖୁବ୍ ଆନନ୍ଦିତ ହେଲେ । ରାଜ୍ୟ ଭିତରେ କେବଳ ଜଣେ ଲୋକର ମନରେ ଦୁଃଖ ହେଲା । ସେ ହେଉଛି ସେହି କେଉଟ— ରଜାଙ୍କ ଭାଇ—ଯିଏ ଏ ଦୁହିଁଙ୍କୁ ବାକ୍ସରୁ ଉଦ୍ଧାର କରି ପାଳିଆସିଥିଲା ।

ରାଜ୍ୟ ଭିତରେ ତିନୋଟି ରାକ୍ଷସୀ ଥିଲେ । ତାଙ୍କ ଭଳି ଭୀଷଣ ବିକଟ ଜୀବ କେଉଁଠି ଦେଖାନଥିଲେ । ଏ ତିନି ରାକ୍ଷସୀ ହେଉଛନ୍ତି ତିନି ଭଉଣୀ । ଏମାନେ ଆଦୌ ମଣିଷ ପରି ଦେଖାଯାଉ ନ ଥିଲେ । ତାଙ୍କ ଦେହରେ ଚମଡ଼ା ନ ଥିଲା; ଥିଲା ଲୁହାର ପଟ । ତାଙ୍କ ମୁଣ୍ଡରେ ଗୁଡ଼ାଏ ଲୋଖାଏଁ ସାପ ବାଳପରି ଓହଳି ଥାନ୍ତି । ସାପ-ଗୁଡ଼ାକ ଗୁଡ଼େଇ ଭୁଡ଼େଇ ହୋଇ ସୁ ସୁ ଶବ୍ଦ କରୁଥାନ୍ତି । ଲମ୍ବ ଲମ୍ବ ଜିଭ ଲହ ଲହ ହେଉଥାଏ । ରାକ୍ଷସୀଙ୍କ ଦାନ୍ତଗୁଡ଼ାକ ବାଘର ଦାନ୍ତ ପରି । ହାତ ଉପରେ ଚମଡ଼ା ନ ଥାଇ ଥାଏ ପିତ୍ତଳର ପଟ । ଆଙ୍ଗୁଠିଗୁଡ଼ାକ ଗୋଜା ଗୋଜା, ଶଳର ନଖ ପରି । ଆହୁରି ଆଶ୍ଚର୍ଯ୍ୟର କଥା, ସେମାନଙ୍କର ସୁନାର ଡେଣା ଥାଏ; ତା ଉପରେ ସୂର୍ଯ୍ୟ କିରଣ ପଡ଼ିଲେ ଚକ୍‌ଚକ୍ ଦିଶେ । ଏହାରି ସାହାଯ୍ୟରେ ସେମାନେ ସହଜରେ ଉଡ଼ି ପାରନ୍ତି । ସବୁଠାରୁ ବଡ଼ ବିପଦ ହେଉଛି, ଯଦି କେହି ମେଡୁସାକୁ ଚାହିଁଦେବ ସେ ତତ୍‌କ୍ଷଣାତ୍ ପଥର ପାଲଟିଯିବ । ତେଣୁ ରାକ୍ଷସୀମାନେ ଉଡ଼ିଯିବା ବେଳେ ଲୋକେ ଲୁଚି ରହନ୍ତି — କାଳେ ସେମାନଙ୍କୁ ଦେଖିପକାଇବେ ।

ଏପରି ଭୀଷଣ ରାକ୍ଷସୀକୁ ମାରିବାକୁ ଯିବା ଯେ କି କଠିନ କାର୍ଯ୍ୟ ତାହା ସହଜେ ଅନୁମାନ କରାଯାଇପାରେ । ଯାହାର ଦେହ ଲୁହାରେ, ଆଙ୍ଗୁଠି ପିତ୍ତଳରେ, ଡେଣା ସୁନାରେ ଗଢ଼ା ତାକୁ ମାରିବା କଣ ସହଜ କଥା ? ମୁଣ୍ଡର ସାପଗୁଡ଼ାକ ଦେଖିଲା ମାତ୍ରକେ ଭୟରେ ମରିବେ । ସବୁଠାରୁ ବଡ଼ କଥା ହେଲା, ମେଡୁସାକୁ କେବେ ହେଲେ ଚାହିଁବାକୁ ହେବ ନାହିଁ । ତାକୁ ଦେଖିଲାମାତ୍ରେ ପଥର ପାଲଟି ଯିବାର ଭୟ ।

ଏପରି ଗୋଟାଏ ବିପଦପୂର୍ଣ୍ଣ କାମ କରିବାକୁ ଯାଉଛନ୍ତି ବୋଲି ପର୍ସିଅସ ମାଆଙ୍କୁ ମଧ୍ୟ କହିଲେ ନାହିଁ । ସେ ଆପଣା ଢାଲ ଓ ଖଣ୍ଡା ଧରି ବାହାରିପଡ଼ିଲେ । ଗୋଟିଏ ଡଙ୍ଗାରେ ବସି ସେ ମେଡୁସା ରହୁଥିବା ରାଜ୍ୟରେ ପହଞ୍ଚିଲେ । ସେ ଗୋଟିଏ ଗଛ ମୂଳେ ବସି କଅଣ କରିବାକୁ ହେବ ଚିନ୍ତା କଲେ । ସେ ଯେତିକି ଭାବିଲେ, ସେତିକି ଆପଦ ବିପଦ କଥା ମନକୁ ଆସିଲା । ମେଡୁସାକୁ ମାରିବାର କୌଣସି ଉପାୟ ଦେଖାଗଲା ନାହିଁ ।

ସେ ମୁଣ୍ଡ ପୋତି ଭାବୁଛନ୍ତି ଏହି ସମୟରେ ଶୁଣିପାରିଲେ— ପର୍ସିଅସ, ତୁମେ ଏତେ ମନଦୁଃଖ କରି ବସିଛ କାହିଁକି ?

ପର୍ସିଅସ ମୁହଁ ଟେକି ଦେଖିଲେ, ତାଙ୍କ ପାଖରେ ଗୋଟିଏ ସୁନ୍ଦର ଯୁବକ ଛିଡ଼ା ହୋଇଛନ୍ତି । ଯୁବକଟି ଯେ ଖୁବ୍ ସାହସୀ ଓ ବୁଦ୍ଧିମାନ୍ ସେ କଥା ତାଙ୍କ ଚେହେରାରୁ ଜଣାପଡ଼ୁଥିଲା । ତାଙ୍କ ମୁଣ୍ଡରେ ଗୋଟିଏ ବିଚିତ୍ର ଟୋପି ଓ ହାତରେ ଗୋଟିଏ ବିଚିତ୍ର ବାଡ଼ି । ତାଙ୍କ ଅଣ୍ଟାରୁ ଗୋଟିଏ ଖଣ୍ଡା ଝୁଲୁଥିଲା । ଲୋକଟିର ମୁହଁ ହସ ହସ—ସତେ ଯେପରି ପର୍ସିଅସକୁ ସାହାଯ୍ୟ କରିବାକୁ ସେ ସ୍ୱର୍ଗରୁ ଓହ୍ଲାଇ ଆସିଛନ୍ତି ।

ପର୍ସିଅସ ଉତ୍ତର କଲେ, "ମୁଁ ଗୋଟାଏ ଅସାଧ୍ୟ କାର୍ଯ୍ୟ କରିବାର ଭାର ନେଇ ଆସିଛି । କପରି କଅଣ କରିବ ସେଇ କଥା ଭାବୁଛି ।"

ଯୁବକ—"କେତେ ଲୋକଙ୍କୁ ମୁଁ ନାନା ଅସାଧ୍ୟ କାର୍ଯ୍ୟରେ ସାହାଯ୍ୟ କରିଛି । ସେମାନେ ଶେଷରେ ସଫଳ ହୋଇଛନ୍ତି । ତୁମେ ମୋର ନାଆଁ ଶୁଣିଥିବ । ମୁଁ ହେଉଛି ମର୍କ୍ୟୁରି । ଆଚ୍ଛା, ତୁମେ କଅଣ କରିବାକୁ ଚାହଁ, ମୋତେ କହ । ହୁଏତ ମୁଁ ତୁମକୁ ସାହାଯ୍ୟ କରିପାରିବ ।"

ପର୍ସିଅସ ଏହି ଯୁବକଙ୍କୁ ସବୁ ଘଟନା କହିଗଲେ । ରାଜା ପଲିଡେକ୍ଟସ ତାଙ୍କୁ ମେଡୁସାର ମୁଣ୍ଡଟି କାଟି ନେବାକୁ କହିଛନ୍ତି; କିନ୍ତୁ ତାକୁ ଚାହିଁଲା ମାତ୍ରେ ସେ ପଥର ପାଲଟିଯିବେ; ତାକୁ ମାରି ମୁଣ୍ଡ ନେବେ କପରି ?

ମର୍କ୍ୟୁରି ହସି ହସି କହିଲେ, "ମୋ ମତରେ ସୁନ୍ଦର ପଥର-ମୂର୍ତ୍ତି ହୋଇ କାଳକାଳକୁ ପଡ଼ିରହିବା ଅପେକ୍ଷା ଏହିଭଳି ଯୁବକ ହୋଇ ଆଉ କେତେ ବର୍ଷ ବଞ୍ଚିରହିବା ତୁମ ପକ୍ଷରେ ଭଲ । ଯାହା ହେଉ, ମୁଁ ସେଥିର ଉପାୟ କହୁଛି । ପ୍ରଥମେ ଆମକୁ ତିନିଜଣ ସ୍ତ୍ରୀଲୋକଙ୍କ ପାଖକୁ ଯିବାକୁ ପଡ଼ିବ । ଏ ତିନିଜଣଙ୍କର ଗୋଟିଏ ମାତ୍ର ଆଖି । ଏଇ ଆଖିଟିକୁ ସେମାନେ ପାଳକରି ବ୍ୟବହାର କରନ୍ତି । ପୁଣି ସେମାନଙ୍କ ପାଖକୁ ରାତିରେ ଜହ୍ନ ନଥିଲାବେଳେ ଯିବାକୁ ହେବ କିମ୍ବା ଠିକ୍ ଗୋଧୂଳି ସନ୍ଧ୍ୟାବେଳେ ଯିବାକୁ ହେବ । ଅନ୍ୟ ସମୟରେ ସେମାନଙ୍କ ଦେଖା ମିଳିବ ନାହିଁ । ସୂର୍ଯ୍ୟ କିମ୍ବା ଚନ୍ଦ୍ରକିରଣ ପଡ଼ୁଥିବା ବେଳେ ସେମାନେ ବାହାରକୁ ଆସନ୍ତି ନାହିଁ ।"

ପର୍ସିଅସ କହିଲେ, "ଆମର ତ ମେଡୁସାର ମୁଣ୍ଡ ଦରକାର— ଏ ସ୍ତ୍ରୀଲୋକଙ୍କ ପାଖେ ଆମର କି କାମ ?"

ମର୍କ୍ୟୁରି ଉତ୍ତର କଲେ, "ତୁମେ ଭାବୁଛ, ଏକାବେଳକେ ମେଡୁସା ପାଖକୁ ଚାଲିଯିବ । ସେ କଥା କଣ ସମ୍ଭବ ? ସେଥିପାଇଁ ଆଗରୁ ଅନେକ କଥା କରିବାକୁ ପଡ଼ିବ । ଆଗେ ତୁମର ଢାଲଟାକୁ ମାଜି ଖୁବ୍ ଚକ୍ ଚକ୍ କରିଦିଅ; ଯେପରିକି ସେଥିରେ ଚାହିଁଲେ ଦର୍ପଣରେ ଦେଖିଲା ପରି ତୁମ ମୁହଁ ଦେଖାଯିବ ।"

ପ୍ରଥମେ ପର୍ସିଅସ ଭାବିଲେ, ଢ଼ାଲକୁ ମାଜି ଚକ୍ ଚକ୍ କରିବା ଏକ ବୃଥା ଶ୍ରମ ଛଡ଼ା ଆଉ କିଛି ନୁହେଁ । ଢାଲଟି ଖୁବ୍ ମଜଭୁତ ହେବା ଦରକାର—ଶତ୍ରୁର ହତିଆର ଯେପରି ତାକୁ ଭେଦି ପାରିବ ନାହିଁ । ଖାଲି ଚକ୍ ଚକ୍ ଦିଶିଲେ କି ଲାଭ ? ଯାହାହେଉ ସେ ମନଦେଇ ଢାଲକୁ ମାଜିବାରେ ଲାଗିଲେ । କିଛି ସମୟ ପରେ ଏହା ଦର୍ପଣ ପରି ଚକ୍ ଚକ୍ ଦିଶିଲା । ମର୍କ୍ୟୁରି ସେଥିରେ ନିଜର ପ୍ରତିବିମ୍ବ ଦେଖିପାରି ଖୁବ୍ ସନ୍ତୁଷ୍ଟ ହେଲେ । ତାପରେ ସେ ନିଜର ପୋଷାକ ଓ ଖଣ୍ଡା ପର୍ସିଅସଙ୍କୁ ଦେଇ ତାଙ୍କ ପୋଷାକ ଓ ଖଣ୍ଡା ନେଇ ଆସିଲେ ।

ଦୁହେଁ ଏହାପରି ପ୍ରସ୍ତୁତ ହୋଇ ଯିବାକୁ ଲାଗିଲେ । ମର୍କ୍ୟୁରି ଏତେ ବେଗରେ ଚାଲୁଥାନ୍ତି ଯେ ପର୍ସିଅସ ବହୁତ ପଛରେ ପଡ଼ି ଯାଉଥାନ୍ତି । କିଛି ଦୂର ଯିବା ପରେ ପର୍ସିଅସଙ୍କର ମନେହେଲା, ସତେ ଯେପରି ମର୍କ୍ୟୁରିଙ୍କ ଦୁଇ ପାଦରେ ଆଉ ମୁଣ୍ଡର ଦୁଇ ପାଖରେ ଗୋଟାଏ ଲେଖାଏଁ ଡେଣା ଲାଗିଛି । ସେ ଖୁବ୍ ନିଖାରି ନିଖାରି ଚାହିଁଲେ ଓ ପ୍ରକୃତରେ ଡେଣା ଲାଗିନାହିଁ ବୋଲି ସ୍ଥିର କଲେ ।

ପଛରେ ଦଉଡ଼ି ଦଉଡ଼ି ପର୍ସିଅସଙ୍କର ଦମ୍ ଛୁଟିଗଲା । ମର୍କ୍ୟୁରି ତାହା ଜାଣିପାରି ଛିଡ଼ା ହୋଇଗଲେ । ପର୍ସିଅସ ପାଖକୁ ଲାଗିଆସିବାରୁ ସେ ଆପଣା ବାଡ଼ିଟି ତାଙ୍କ ହାତକୁ ବଢ଼ାଇ ଦେଇ କହିଲେ, "ଏଇଟି ତୁମର ଦରକାର ।" ଏଣିକି ପର୍ସିଅସ ଟିକିଏ

ବେଗରେ ଗୃଲିପାରିଲେ । ସେ କହିଲେ, "ଯଦି ମୋ ପାଦରେ ଗୋଟାଏ ଲେଖାଏଁ ଡେଣା ଲଗା ଜୋତା ଥାଆନ୍ତା, ମୁଁ ଆହୁରି ବେଗରେ ଯାଇପାରନ୍ତି ।" ମର୍କ୍ୟୁରି ଉତ୍ତର କଲେ, ଆଛା, ସେ କଥା ପରେ ଦେଖିବା ।"

ଦୁହେଁ ପୁଣି ଗ୍ଲଲେ । ବାଡ଼ି ଧରିଲାବେଳୁ ପର୍ସିଅସଙ୍କ ଦେହରେ ନୂଆ ବଳ ଆସିଥିଲା । ସେ ଆଉ ଆଗଭଳି ହାଲିଆ ହୋଇ ପଡୁ ନ ଥିଲେ । କିଛି ଦୂର ଯିବା ପରେ ସେମାନେ ସେହି ତିନିଜଣ ସ୍ତ୍ରୀ ଲୋକଙ୍କୁ ଭେଟିଲେ ।

ପର୍ସିଅସ ଦେଖିଲେ, ତିନିଜଣଯାକଙ୍କର ଗୋଟିଏ ମାତ୍ର ଆଖି । ଯାହାର ଯେତେବେଳେ ଦରକାର ସେ ତାକୁ ବ୍ୟବହାର କରି ଦେଖେ । ଆଉ ଦୁଇ ଜଣ ସେତେବେଳେ କିଛି ଦେଖି ପାରନ୍ତି ନାହିଁ । ଜଣେ ଆଖିଟି କାଢ଼ି ଆଉ ଜଣକୁ ବଢ଼ାଇ ଦେବାକୁ ଯାଉଥିବା-ବେଳେ ପର୍ସିଅସ ତା ହାତରୁ ଆଖିଟି ନେଇ ଆସିଲେ । ଏବେ ସମସ୍ତେ ଅନ୍ଧ ହୋଇଗଲେ । ମର୍କ୍ୟୁରି କହିଲେ, "ତିନି ପରୀ କେଉଁଠି ଅଛନ୍ତି କହିଦେଲେ ତମ ଆଖି ଫେରାଇ ଦେବୁ ।" ଶେଷରେ ସେମାନେ ବାଧ୍ୟହୋଇ ପରୀଙ୍କ ପାଖକୁ ଯିବାର ବାଟ ବତେଇ ଦେଲେ ।

ସେ ଦୁହେଁ ତିନି ପରୀଙ୍କ ପାଖେ ପହଞ୍ଚିଲେ । ଏମାନଙ୍କ ପାଖରେ ତିନୋଟି ବଡ଼ିଆ ଜିନିଷ ଥିଲା—ଗୋଟିଏ ଥଳୀ, ଯୋଡ଼ାଏ ବଡ଼ିଆ ଜୋତା ଓ ଗୋଟିଏ ଟୋପି ।

ପରୀମାନେ ଭାରି ସୁନ୍ଦରୀ । ସେମାନଙ୍କର ବ୍ୟବହାର ମଧ୍ୟ ଉତ୍ତମ । ମର୍କ୍ୟୁରି ସେମାନଙ୍କୁ ଆଗରୁ ଚିହ୍ନିଥିଲା ପରି ଜଣା-ପଡୁଥିଲା । ମର୍କ୍ୟୁରିଙ୍କ ଅନୁରୋଧରେ ସେମାନେ ଏହି ତିନୋଟି ଜିନିଷ ପର୍ସିଅସଙ୍କୁ ଦେବାପାଇଁ ରାଜି ହେଲେ ।

ପ୍ରଥମେ ସେମାନେ ଥଳଟି ଦେଲେ । ଏଇଟି ହରିଣ ଚମଡ଼ାରେ ତିଆରି ଓ ତା ଉପରେ ସୁନ୍ଦର କାରୁକାର୍ଯ୍ୟ ହୋଇଥିଲା । ତାପରେ କଠାଉ ଦୁଇଟି ଆଣିଲେ । ପ୍ରତି କଠାଉରେ ଗୋଟିଏ ଲେଖାଏଁ ଡେଣା ଲଗିଥିଲା । ପର୍ସିଅସ୍ ପଟେ କଠାଉ ପାଖରେ ଥୋଇ ଆଉ ପଟକ ଗୋଟିଏ ଗୋଡ଼ରେ ପିନ୍ଧୁ ପିନ୍ଧୁ ଥୁଆହୋଇଥିବା କଠାଉଟି ଉଡ଼ିଯିବାକୁ ବସିଲା । ମର୍କ୍ୟୁର ଡେଇଁପଡ଼ି ତାହା ଧରିପକାଇଲେ; ସାବଧାନ କରିଦେଲେ ଯେ ଦୁଇଟି ଯାକ ଏକାବେଳକେ ପିନ୍ଧିବାକୁ ହେବ । ପର୍ସିଅସ୍ ଦୁଇଟିଯାକ କଠାଉ ପିନ୍ଧି ସାରିବା ମାତ୍ରେ ସେ ଆଉ ଭୂଇଁ ଉପରେ ବସିରହିବା କଷ୍ଟକର ହେଲା । ସେ ଉଡ଼ିବାକୁ ବାହାରିଲେ । ଶେଷରେ ପରୀମାନେ ତାଙ୍କ ମୁଣ୍ଡରେ ଟୋପିଟି ପିନ୍ଧାଇ ଦେଲେ । ଏହାକୁ ପିନ୍ଧିବା ମାତ୍ରେ ଏକ ଅଦ୍ଭୁତ ଘଟଣା ଘଟିଲା । ସେ ଆଉ କାହାରିକୁ ଦେଖାଗଲେ ନାହିଁ ।

ମର୍କ୍ୟୁର ପ୍ରଶ୍ନ କଲେ, "ପର୍ସିଅସ୍, ତୁମେ କୁଆଡ଼େ ଅଛ ?"

ପର୍ସିଅସ୍ଙ୍କଠାରୁ ଉତ୍ତର ମିଳିଲା—"ଏଇ ଯେ ତୁମ ପାଖରେ । ତୁମେ କଅଣ ମୋତେ ଦେଖିପାରୁନାହିଁ ?"

ମର୍କ୍ୟୁର—"ଦେଖିପାରିବି କପରି ? ଏ ଟୋପିକୁ ଯେ ପିନ୍ଧେ ସେ ଆଉ ଦେଖାଯାଏ ନାହିଁ । ତୁମେ ମେଦୁସାକୁ ମାରିବାକୁ ଗଲାବେଳେ ସେ ତୁମକୁ ଦେଖିପାରିବ ନାହିଁ ବୋଲି ଏ ଟୋପି ତୁମକୁ ପିନ୍ଧାଇ ଦିଆଗଲା । ଏବେ ଏ କଠାଉ ପିନ୍ଧି ତୁମେ କପରି ଯାଇପାରିବ ଦେଖିବା । ମୁଁ ଆଗେ ଆଗେ ଯାଉଛି । ତୁମେ ମୋ ପଛରେ ଆସ ।"

ମର୍କ୍ୟୁରଙ୍କ ଟୋପିର ଦୁଇ ପାଖେ ଦୁଇଟି ଡେଣା ଖୋଲିଗଲା । ଦୁହେଁଯାକ ଆକାଶକୁ ଉଠିଯାଇ ଉଡ଼ିବାକୁ ଲାଗିଲେ ।

ଆକାଶରେ ଚନ୍ଦ୍ର ଦେଖାଦେଲେ । ତାଙ୍କ ଉଜ୍ଜ୍ୱଳ କିରଣରେ ପୃଥିବୀ ଉପରଯାକ ରୁପା ପରି ଦିଶିଲା । ପର୍ସିଅସ୍ ଆହୁରି ଉପରକୁ ଉଡ଼ି ଚନ୍ଦ୍ର ପାଖକୁ ଯିବା ପାଇଁ ମନ କଲେ । ସେଠି ଚନ୍ଦ୍ର ଉପରେ ରହିଲେ ତାଙ୍କ ଜୀବନଟା କେଡ଼େ ସୁଖରେ କଟିଯାନ୍ତା ! ସେ ଉଡ଼ୁ ଉଡ଼ୁ ତଳକୁ ଚାହିଁଲେ । କେତେ ନଦୀ, କେତେ ହ୍ରଦ, ପାହାଡ଼ ପର୍ବତ, ବଣ, ଗଛଲତା ତାଙ୍କ ଆଖିରେ ପଡ଼ିଲା । କେତେ ପର୍ବତ ଉପରେ ଥିବା ବରଫ ତାଙ୍କୁ ଦେଖାଯାଉଥାଏ । ସହର, ଗ୍ରାମ ସବୁ ଚିତ୍ରପଟ ପରି ବୋଧ ହେଉଥାଏ । ସେ ସେରିଫସ୍ ଦ୍ୱୀପକୁ ଚାହିଁ-ଦେଲାକ୍ଷଣି ମାଆଙ୍କ କଥା ତାଙ୍କ ମନରେ ପଡ଼ିଲା । ସେ ଭାବିଲେ— ଚନ୍ଦ୍ରକୁ ଗଲେ ତ ଆଉ ମାଆଙ୍କୁ ଦେଖିପାରିବି ନାହିଁ !

ଆକାଶରେ ମେଘଖଣ୍ଡମାନ ଦୂରରୁ କୋଠାଘର ଭଳି ଦିଶୁଥାନ୍ତି । ପର୍ସିଅସ୍ ତା ପାଖକୁ ଗଲେ ଦେଖନ୍ତି, କେବଳ ଥଣ୍ଡା ବାମ୍ପ । ସେ ସେଠାରୁ ଚାଲିଆସନ୍ତି ।

ଏହିପରି ଶୂନ୍ୟ ଆକାଶରେ ଦୁହେଁଯାକ ଅନେକ ବାଟ ଉଡ଼ିଯିବା ପରେ କାହାରି ଡେଣାର ଶବ୍ଦ ଶୁଣାଗଲା । ପର୍ସିଅସ୍ ଟିକିଏ ଭୟ କରିଗଲେ । ମର୍କ୍ୟୁରି କହିଲେ, "ଭୟର କାରଣ ନାହିଁ । ସେ ହେଉଛନ୍ତି ମୋର ଭଉଣୀ । ତାଙ୍କ ନାଆଁ ଏଥିନ । ସେ ଆମକୁ ସାହାଯ୍ୟ କରିବେ । ତାଙ୍କ ସାହାଯ୍ୟ ବିନା ତୁମେ ମେଡୁସାକୁ ମାରିପାରିବ ନାହିଁ । ଆମେ ଯାହା ଦେଖିପାରୁନାହେଁ, ସେ ତାହା ଦେଖିପାରନ୍ତି । ତୁମେ ଆଉ କାହାକୁ ଦେଖାଯାଉନାହଁ ସତ, କିନ୍ତୁ ସେ ତୁମକୁ ଦେଖିପାରି ଆସିଛନ୍ତି । ମେଡୁସା ଆଉ ତା ଦୁଇ ଭଉଣୀ କେଉଁଠି ଅଛନ୍ତି ଆମକୁ ଜଣାନାହିଁ । କୁଆଡ଼େ ଖୋଜି ବୁଲିବା ? ସେ ଆମକୁ ମେଡୁସା ପାଖରେ ପହଞ୍ଚାଇ ଦେବ ।"

ସେତେବେଳକୁ ସେମାନେ ସମୁଦ୍ର ଉପରେ ଉଡୁଥିଲେ । ପର୍ସିଅସ ତଳକୁ ଚାହିଁ କେବଳ ନୀଳ ପାଣି ଆଉ ତା ଉପରେ ଧଳା ଫେଣ ଦେଖୁଥିଲେ । ତାଙ୍କ କାନ ପାଖରେ ଧୀରସ୍ୱରରେ ଶୁଣାଗଲା, "ଏଇ ଦେଖ, ତିନି ଭଉଣୀଯାକ ଶୋଇଛନ୍ତି ।" ପର୍ସିଅସ୍ ସେମାନଙ୍କୁ ଦେଖି ନପାରି ପଚାରିଲେ, "କାହିଁ, କେଉଁଠି ? ମୁଁ ସେମାନଙ୍କୁ ଦେଖିପାରୁନି ।"

ପର୍ସିଅସ ପୁଣି ଶୁଣିଲେ, "ଆମ ତଳେ ଏଇ ଯେଉଁ ଦ୍ୱୀପଟା ଅଛି, ତାର କୂଳକୁ ଚାହଁ ।"

ମର୍କ୍ୟୁରି କହିଲେ, "ଦେଖିଲ, ମୋ କଥା ସତ କି ନା ? ମୋ ଭଉଣୀ ପ୍ରଥମେ ସେମାନଙ୍କୁ ଦେଖିବେ ବୋଲି ମୁଁ କହିଥିଲି ପରା !"

ପର୍ସିଅସ୍ ଖୁବ୍ ତଳକୁ ଚାହିଁ ଗୋଟିଏ ଶ୍ରେଷ୍ଠ ଦ୍ୱୀପ ଦେଖି-ପାରିଲେ । ତାର କୂଳଟା ପାହାଡ଼ିଆ । ସମୁଦ୍ରର ଲହରୀଗୁଡ଼ାକ କୂଳରେ ପିଟିହେଉଥାନ୍ତି । ଦ୍ୱୀପର ଗୋଟାଏ ପାଖର କୂଳ ପାହାଡ଼ିଆ ନୁହେଁ; ବାଲିରେ ପୂର୍ଣ୍ଣ । ତିନିଜଣଯାକ ସେଇ ବାଲିଆ ଜାଗାରେ ଓହ୍ଲାଇ ପଡ଼ିଲେ ।

ଏବେ ପର୍ସିଅସ ତିନି ଭଉଣୀଙ୍କୁ ଦେଖିପାରିଲେ । ସେମାନଙ୍କ ସୁନା ଡେଣା ଉପରେ ଚନ୍ଦ୍ରକିରଣ ପଡ଼ି ଚକ୍‌ଚକ୍ ଦିଶୁଥାଏ । ସେମାନଙ୍କ ଲମ୍ବ ଲମ୍ବ ଗୋଜିଆ ଆଙ୍ଗୁଠିଗୁଡ଼ାକ ଦେଖିଲେ ଡର ମାଡ଼ିବାର କଥା । ଏଣେ ମୁଣ୍ଡର ସାପଗୁଡ଼ାକ ଜିଭ ଲହ ଲହ କରି ଗୁଡ଼େଇ-ଭୁଡ଼େଇ ହେଉଥାନ୍ତି । ଭାଗ୍ୟର କଥା, ସେତେବେଳକୁ ସବୁ ଭଉଣୀ ନିଶ୍ଚିନ୍ତରେ ନିଦରେ ଶୋଇଥାନ୍ତି । ଚେଇଁଥିଲେ ସେମାନଙ୍କୁ ଚାହିଁଲାକ୍ଷଣି ଏମାନେ ପଥର ପାଲଟି ଯାଇଥାନ୍ତେ ।

ମର୍କ୍ୟୁରି ଚୁପ୍ କରି ପର୍ସିଅସ୍‌ଙ୍କ କାନରେ କହିଲେ, "ଏଇ ହେଉଛି ଅସଲ ସୁବିଧା ବେଳ । ଶୀଘ୍ର ଖଣ୍ଡାର ଏକ ଚୋଟରେ

ମେଡୁସାର ମୁଣ୍ଡଟାକୁ ଗଣ୍ଡିରୁ ଅଲଗା କରିଦିଅ । ଦେଖ, ସେମାନେ ଆଖି ମେଲିବା ଆଗରୁ ତୁମ କାମ ଶେଷ କରିବ । ଆଖି ଖୋଲିଲେ ତୁମର ରକ୍ଷା ନାହିଁ ।"

ପର୍ସିଅସ୍ ଖଣ୍ଡା ଧରି ବାହାରିଲେ ; କିନ୍ତୁ ତିନିଙ୍କ ଭିତରୁ ମେଡୁସା କିଏ ଜାଣି ନ ପାରି ଟିକିଏ ଛିଡ଼ା ହୋଇଗଲେ । ଏହି ସମୟରେ ଏଥିନ ତାଙ୍କ କାନ ପାଖରେ କହିଲେ, "ଦେଖ, ଜଣେ କଡ଼ ଲେଉଟାଉଛି, ଆଉ ଦୁଇ ଜଣ ଶୋଇରହିଛନ୍ତି । ଯିଏ କଡ଼ ଲେଉଟାଉଛି, ସେଇ ହେଉଛି ମେଡୁସା । ସାବଧାନ୍, ତା ନିଦ ଭାଙ୍ଗି ଆସୁଛି । କେଉଁ କାଳେ ଆଖି ମେଲି କରିଦେବ, ସେଥିପାଇଁ ତୁମେ ଢାଲ ଉପରେ ତାର ଛାଇକୁ ଚାହିଁ ତାକୁ ହାଣିବ ।"

ଏତେବେଳକୁ ପର୍ସିଅସ୍ ମହଜରେ ବୁଝିପାରିଲେ ଯେ ମର୍କ୍ୟୁରି ତାଙ୍କୁ ଢାଲ ମାଜି କାଚପରି ଚିକ୍କଣ କରିବାକୁ କହିବାର ପ୍ରକୃତ ଉଦ୍ଦେଶ୍ୟ କଣ ଥିଲା । ସେ ଏଣିକି କେବଳ ଢାଲକୁ ଚାହିଁଲେ । ସେ ଆସ୍ତେ ଆସ୍ତେ ସେମାନଙ୍କ ପାଖକୁ ଆସିବାରୁ ସାପ ଗୁଡ଼ାକ ସୁ ସୁ ଶବ୍ଦ କରି କାମୁଡ଼ିବାକୁ ବାହାରିଲେ । ସେହି ଶବ୍ଦରେ ମେଡୁସାର ନିଦ ଭାଙ୍ଗିଗଲା । ସେ ଆଖି ଖୋଲିବା ଆଗରୁ ପର୍ସିଅସ୍ ଖଣ୍ଡାରେ ଏପରି ଚୋଟ ମାରିଲେ ଯେ ମୁଣ୍ଡଟା ଗଣ୍ଡିରୁ ଅଲଗା ହୋଇ ଟିକିଏ ଦୂରରେ ପଡ଼ିଲା ।

ମର୍କ୍ୟୁରି ପର୍ସିଅସ୍‌ଙ୍କୁ ପ୍ରଶଂସା କରି କହିଲେ, "ଆଉ ମୁହୂର୍ତ୍ତେ ବିଳମ୍ବ କରନାହିଁ । ଶୀଘ୍ର ମୁଣ୍ଡଟାକୁ ଥଳି ଭିତରେ ପୂରାଇ ଦିଅ ।"

ପର୍ସିଅସ୍ ଢାଲରେ ମେଡୁସାର ମୁଣ୍ଡର ପ୍ରତିବିମ୍ବ ଆଡ଼କୁ ଅନାଇଁ ଥଳିରେ ମୁଣ୍ଡଟିକୁ ପୂରାଇ ଦେଲେ । ଆଶ୍ଚର୍ଯ୍ୟର କଥା, ଥଳିଟି ଏତେ ଛୋଟ ହେଲେହେଁ ସେଥିରେ ସେ ପ୍ରକାଣ୍ଡ ମୁଣ୍ଡଟା ପଶିଗଲା ।

ଏଥିନ ପୁଣି କହିଲେ, "ପର୍ସିଅସ୍, ତୁମେ ମେଡୁସାକୁ ମାରିଛ ସତ, ମାତ୍ର ବିପଦ ପୂରା ଯାଇନାହିଁ । ମେଡୁସାର ଭଉଣୀ ଦୁଇଟା ଉଠିପଡ଼ିବେ । ତା ଆଗରୁ ତୁମର ଏଠାରୁ ପଳାଇଯିବା ଦରକାର । ଏଇ ଦେଖ, ରାକ୍ଷସୀ ଦୁଇଟା ଉଠିବାକୁ ବାହାରିଲେଣି ।"

ପର୍ସିଅସ୍ ଥଳିଟି ଧରି ମୁହୂର୍ତ୍ତକ ଭିତରେ ଉପରକୁ ବହୁ ଦୂର ଉଡ଼ିଗଲେ । ରାକ୍ଷସୀ ଦୁହେଁ ଉଠିପଡ଼ି ଭଉଣୀର ଚଣ୍ଡିଟା ପଡ଼ିଥିବାର ଦେଖି ଗର୍ଜ୍ଜନ କରି ଉଠିଲେ । ଦୁହିଁଙ୍କ ମୁଣ୍ଡର ସାପମାନେ ସୁ ସୁ ଗର୍ଜନ କଲେ । ଏଣେ ପର୍ସିଅସ୍‌ଙ୍କ ଥଳିରେ ଥିବା ମେଡୁସା ମୁଣ୍ଡର ସାପଗୁଡ଼ାକ ମଧ୍ୟ ଗର୍ଜୁଥାନ୍ତି ।

ଦୁଇ ରାକ୍ଷସୀ ରାଗରେ ଗର୍ଜ୍ଜନ କରି ସୁନାର ଡେଣା ମେଲାଇ ଆକାଶରେ ଉଡ଼ିବାକୁ ଲାଗିଲେ । ସେମାନଙ୍କର ଦାନ୍ତ କଡ଼ମଡ଼ ହେଉଥାଏ । ସେମାନେ ପ୍ରଥମେ ଆକାଶକୁ କିଛି ଦୂର ଉପରକୁ ଉଠି ମେଡୁସାର ଗଣ୍ଡି ଚାରିପାଖେ ଉଡ଼ି ବୁଲିଲେ ; କିନ୍ତୁ କାହାରିକୁ ଦେଖିପାରିଲେ ନାହିଁ ।

ପର୍ସିଅସ୍ ଯେଉଁ ଟୋପି ପିନ୍ଧିଥିଲେ, ତା ଯୋଗେ ସେ କାହାରିକୁ ଦିଶୁ ନଥିଲେ । ତେଣୁ ଭଉଣୀ ଦୁହେଁ ତାଙ୍କୁ ଦେଖି ପାରିଲେ ନାହିଁ । ଏଣେ ପର୍ସିଅସ୍ ସାବଧାନ ଥାନ୍ତି ଯେପରି ସେ ସେମାନଙ୍କର ମୁହଁ ନ ଦେଖନ୍ତି । ଦୈବାତ୍ ସେମାନଙ୍କ ଆଖି ତାଙ୍କ ଉପରେ ପଡ଼ିଗଲେ ସେ ପଥର ହୋଇ ତଳକୁ ଖସି ପଡ଼ିଥାନ୍ତେ । ଏଣେ ପାଦରେ ଡେଣା ଲଗା କଠାଉ ପିନ୍ଧିଥିବାରୁ ସେ ଖୁବ୍ ବେଗରେ ଉଡୁଥାନ୍ତି । ଅଳ୍ପ ସମୟ ଭିତରେ ସେ ବହୁତ ଦୂରକୁ ଚାଲିଗଲେ । ଶେଷେ ରାକ୍ଷସୀମାନଙ୍କର ଗର୍ଜନ ଆଉ ଶୁଣାଗଲା ନାହିଁ । ସେ ମେଡୁସାର ମୁଣ୍ଡ ଧରି ସେରିଫସ ଦ୍ୱୀପରେ ପହଞ୍ଚିଲେ । ବାଟରେ ତାଙ୍କୁ ଆହୁରି ଅନେକ ବିପଦ ଘଟିଥିଲା । ସେଥିଭିତରୁ

ଗୋଟିଏ ଘଟଣା ଉଲ୍ଲେଖ କରାଯାଇପାରେ । ବାଟରେ ପର୍ସିଅସ୍ ଆଣ୍ଡ୍ରୋମେଡ଼ା ବୋଲି ଗୋଟିଏ ପ୍ରକାଣ୍ଡ ଦୁଷ୍ଟ ଦୈତ୍ୟଙ୍କୁ ଭେଟିଲେ । ସେ ତାଙ୍କୁ ମେଡୁସାର ମୁଣ୍ଡଟା ଦେଖାଇଦେବାରୁ ସେ ଗଦାଏ ପଥର ହୋଇଗଲା । ଆଜଯାଏ ସେ ପଥର ଗଦା ରହିଛି । ଲୋକେ ଏବେ ତାଙ୍କୁ କହନ୍ତି ଆଟଲସ ପାହାଡ଼ । ତୁମେ କେବେ ଆଫ୍ରିକା ଗଲେ ସେହି ପାହାଡ଼ ଦେଖିପାରିବ ।

ସେରଫସ୍ ଦ୍ୱୀପରେ ପହଞ୍ଚିଲା ମାତ୍ରେ ପର୍ସିଅସ ମାଆଙ୍କୁ ଦେଖିବାକୁ ଗଲେ । କେଉଟ ଘରକୁ ଯାଇ ବୁଝିଲେ ଯେ ମାଆ ସେଠାରେ ନାହାନ୍ତି । ପର୍ସିଅସ୍ ଯିବା ପରେ ଦୁଷ୍ଟ ରାଜା ତାଙ୍କ ଉପରେ ନାନା ଅତ୍ୟାଚାର କରିବାରୁ ସେ ପଳାଇ ଯାଇ ଗୋଟିଏ ମଠରେ ଆଶ୍ରୟ ନେଇଥିଲେ । ମଠର ସନ୍ନ୍ୟାସୀମାନେ ତାଙ୍କୁ ଆଦରରେ ରଖିଥିଲେ । ସେ ଦ୍ୱୀପର ଲୋକମାନେ ସମସ୍ତେ ଅତ୍ୟାଚାରୀ; କିନ୍ତୁ ସେହି କେଉଟ ଓ ମଠର ସନ୍ନ୍ୟାସୀମାନେ ଭଲ ଲୋକ ଥିଲେ । ତେଣୁ ପର୍ସିଅସ୍‌ଙ୍କ ମାଆ ମଠରେ ସୁଖରେ ଥିଲେ ।

ପର୍ସିଅସ୍ ଦୁଷ୍ଟମାନଙ୍କୁ ଉପଯୁକ୍ତ ଦଣ୍ଡ ଦେବାକୁ ମନେ ମନେ ସ୍ଥିର କଲେ । ସେ ମେଡୁସାର ମୁଣ୍ଡଟି ଥଳିରେ ଧରି ରାଜବାଟୀରେ ପହଞ୍ଚିଲେ । ପର୍ସିଅସଙ୍କୁ ଦେଖିଲା ମାତ୍ରେ ପଲିଡେକ୍ଟସ ମନେ ମନେ ରାଗିଗଲେ । ସେ ଭାବିଥିଲେ, ପର୍ସିଅସ ମେଡୁସାକୁ ଚାହିଁ ପଥର ହୋଇଯାଇଥିବ କିମ୍ବା ତାର ହାତରେ ମରିଥିବ । ଏବେ ସେ ଫେରିଆସିଥିବାର ଦେଖି ସେ ରାଗିଉଠି କହିଲେ, "ମେଡୁସାର ମୁଣ୍ଡ ଆଣି ନ ଥିଲେ ତୋତେ ପ୍ରାଣଦଣ୍ଡ ଦିଆଯିବ ।"

ପର୍ସିଅସ୍ ଉତ୍ତର କଲେ, "ମହାରାଜ, ମୁଁ ମେଡୁସାର ମୁଣ୍ଡ ଆଣି ଆସିଛି । ତା ମୁଣ୍ଡର ସାପଗୁଡ଼ାକ ଏବେ ମଧ୍ୟ ବଞ୍ଚିଛନ୍ତି ।"

ଏଥିପୂର୍ବରୁ ରାଜା ପଲିଡେକ୍ଟସ ଏବଂ ରାକ୍ଷସୀମାନଙ୍କ ବିଷୟରେ ନାନା ଅଦ୍ଭୁତ କଥା ଶୁଣିଥିଲେ । ଗୋଟାଏ ରାକ୍ଷସୀର ମୁଣ୍ଡ ଆସିଛି ଶୁଣି ତାକୁ ଦେଖିବାପାଇଁ ତାଙ୍କ ମନ ଅଧୀର ହୋଇଉଠିଲା । ସେ ମୁଣ୍ଡଟିକୁ ଦେଖାଇବାପାଇଁ ପର୍ସିଅସ୍‌କୁ ଆଦେଶ ଦେଲେ ।

ପର୍ସିଅସ୍ କହିଲେ, "ଆପଣ ଶୁଣିଛନ୍ତି ଯିଏ ମେଦୁସାର ମୁହଁକୁ ଚାହିଁବ, ସେ ତାକୁ ଚାହିଁ ରହିଥିବ; ପଲକ ପକାଇ ପାରିବ ନାହିଁ । ପ୍ରକୃତରେ ସେ କଥା ସତ । ଏପରି ଗୋଟିଏ ବିଚିତ୍ର ଜିନିଷ ରାଜ୍ୟର ସବୁ ଲୋକେ ଦେଖିବା ଦରକାର । ମୋର ନିବେଦନ, ରାଜ୍ୟରେ ଗୋଟିଏ ଦିନ ସ୍ଥିର କରାଯାଉ । ସେ ଦିନ ସମସ୍ତେ ଏଠାକୁ ଆସି ମେଦୁସାର ମୁଣ୍ଡକୁ ଦେଖିବେ ।"

ଏ ପ୍ରସ୍ତାବଟି ରାଜାଙ୍କ ମନକୁ ପାଇଲା । ତା ଆରଦିନ ରାଜ୍ୟର ସମସ୍ତେ ରାଜବାଟୀକୁ ଆସି ମେଦୁସାର ମୁଣ୍ଡକୁ ଦେଖିବେ ବୋଲି ଘୋଷଣା କରାଗଲା । ରାଜ୍ୟର ହଜାର ହଜାର ଲୋକ ଆସି ରାଜବାଟୀରେ ଜମାହେଲେ । ଯେଉଁ ଅଳ୍ପ କେତେଜଣ ନିଜ ନିଜ କାମରେ ଲାଗିଥିଲେ, ସେଇମାନେ କେବଳ ଆସିଲେ ନାହିଁ । ଯେଉଁ କେଉଟଟି ପର୍ସିଅସ୍‌କୁ ଆଶ୍ରୟ ଦେଇଥିଲା, ସେ ମାଛ ଧରିବା ପାଇଁ ଚାଲିଯାଇଥିଲା । ମଠର ସନ୍ନ୍ୟାସୀମାନେ ଦିଅଁ ପୂଜା ଓ ଧର୍ମଗ୍ରନ୍ଥ ପଢ଼ିବାରେ ଲାଗିଥିଲେ । ସେମାନେ ମେଦୁସାର ମୁଣ୍ଡ ଦେଖିବାକୁ ଆସନ୍ତେ ବା କାହିଁକି ?

ରାଜା ଗୋଟିଏ ଉଚ୍ଚ ବେଦୀରେ ସିଂହାସନ ଉପରେ ବସିଲେ । ରାଜ୍ୟର ହଜାର ହଜାର ଲୋକ ମେଦୁସାର ମୁଣ୍ଡ ଦେଖିବେ ବୋଲି ଠେଲାଠେଲି ହେଉଥାନ୍ତି । ପର୍ସିଅସ୍ ଥଳିଟି ଧରି ଠିଆହୋଇଥାନ୍ତି । ଲୋକେ ଅଧୀର ହୋଇ ପାଟିକଲେ, "ଆମକୁ ଶୀଘ୍ର ମେଦୁସାର ମୁଣ୍ଡ ଦେଖାଅ ।"

ପର୍ସିଅସ୍ ଧୀରସ୍ଥିର ଭାବରେ କହିଲେ, "ମହାରାଜ, ଆପଣ ଓ ଆପଣଙ୍କ ପ୍ରଜାମାନେ ମେଡୁସାର ମୁଣ୍ଡ ଦେଖିବାକୁ ଶ୍ରୁହାନ୍ତ । କିନ୍ତୁ ଏଭଳି ଗୋଟାଏ କଦର୍ଯ୍ୟ ଜିନଷ ଦେଖି କାହାର ଲଭ ନାହିଁ; ବରଂ କ୍ଷତି ଅଛି । ତେଣୁ ମୁଁ ସେ ମୁଣ୍ଡଟା ଦେଖାଇବାକୁ ଇଚ୍ଛା କରୁନାହିଁ ।"

ପର୍ସିଅସ୍‌ଙ୍କର ଉଦ୍ଦେଶ୍ୟ ଭଲ ଥିଲ । ଏତେ ଗୁଡ଼ାଏ ଲୋକ ପଥର ପାଲଟିଗଲେ ଲଭ କଅଣ ? ମାତ୍ର ଦୁଷ୍ଟ ଲୋକେ ସେ କଥା ବୁଝିଲେ ନାହିଁ । ରଜା ରଗିଉଠି କହିଲେ, "ମୋ ସାଥିରେ ଧୃଷ୍ଟତା ! ମେଡୁସାର ମୁଣ୍ଡ ନ ଆଣି ମିଛରେ ଏତେଗୁଡ଼ାଏ ଲୋକଙ୍କୁ ଠକିବାକୁ ବସିଛି । ତାକୁ ପ୍ରାଣଦଣ୍ଡ ନ ଦେଇ ଛାଡ଼ିବ ନାହିଁ ।"

ମନ୍ତ୍ରୀମାନଙ୍କ ପରାମର୍ଶରେ ରଜା ହୁକୁମ ଦେଲେ—ପର୍ସିଅସ୍ ମେଡୁସାର ମୁଣ୍ଡ ଦେଖାଉ, ନ ଦେଲେ ତାର ମୁଣ୍ଡକାଟ ହେବ ।

ପର୍ସିଅସ୍ ଦେଖିଲେ, ଏଭଳି ଦୁଷ୍ଟ ଲୋକଙ୍କର ଉପକାର କରିବାକୁ ଚେଷ୍ଟା କରିବା ଠିକ୍ ନୁହେଁ । ସେ ନିଜ ମୁହଁ ବୁଲାଇ ଦେଇ ଥଳିରୁ ମେଡୁସାର ମୁଣ୍ଡଟି କାଢ଼ି ଟେକିଧରିଲେ ।

ସମସ୍ତେ ସଙ୍ଗେ ସଙ୍ଗେ ପଥର ପାଲଟିଗଲେ । ରଜା, ମନ୍ତ୍ରୀ, ରାଜ୍ୟର ଲୋକେ, ଯେ ଯେପରି ଥିଲେ ସେହିପରି ରହିଗଲେ । କ୍ଷଣକ ଭିତରେ ହଜାର ହଜାର ପଥରମୂର୍ତ୍ତି ଛଡ଼ା ଆଉ କିଛି ଦେଖାଗଲ ନାହିଁ ।

ପର୍ସିଅସ୍ ସେହି ମୁଣ୍ଡକୁ ପୁଣି ଥଳିରେ ବନ୍ଦ କରିଦେଲେ । ତା'ପରେ ମଠକୁ ଯାଇ ମାଆଙ୍କୁ ସବୁ ଘଟଣା କହିଲେ । ଏଣିକି ମାଆ ପୁଅ ନିଶ୍ଚିନ୍ତରେ ରହିଲେ । କେଉଁଠି ମଧ୍ୟ ସୁଖରେ ଚଳିଲ ।

---

# ଛୁଇଁଲେ ସୁନା

ବହୁକାଳ ପୂର୍ବେ ଗ୍ରୀସ ଦେଶର ଗୋଟିଏ ରାଜ୍ୟରେ ମିଡାସ ନାମକ ଜଣେ ରାଜା ଥିଲେ । ତାଙ୍କର ବହୁତ ଧନସମ୍ପତ୍ତି ଥିଲା । ରାଜଭଣ୍ଡାରରେ ସେ ବହୁତ ସୁନା ଜମା କରି ରଖିଥିଲେ । ସୁନାରେ ତାଙ୍କର ସବୁଠାରୁ ବେଶି ଲୋଭ । ଜଗତରେ ସେ ଦୁଇଟି ଜିନିଷକୁ ବେଶି ଭଲପାଉଥିଲେ—ଗୋଟିଏ ହେଉଛି ସୁନା, ଆଉଟି ହେଉଛି ତାଙ୍କର ଏକମାତ୍ର ଝିଅ ମେରିଗୋଲ୍ଡ୍ ।

ମିଡାସ ରାଜ୍ୟର ଭଲମନ୍ଦ ବୁଝିବାକୁ ଚେଷ୍ଟା କରୁ ନଥିଲେ; କିନ୍ତୁ ରାଜା ହୋଇ ରହିବାକୁ ତାଙ୍କର ଭାରି ଆଗ୍ରହ । ଏଥିର ଏକମାତ୍ର କାରଣ ହେଲା, ରାଜା ହୋଇଥିବାରୁ ସେ ଦେଶର ସୁନା ଆଣି ନିଜ ଭଣ୍ଡାରରେ ରଖି ପାରୁଥିଲେ । ସୁନାର ମୁଦ୍ରାଟି ମୁଣ୍ଡରେ ଦେଲାବେଳେ ତାଙ୍କ ମନ ଆନନ୍ଦରେ ପୂରିଯାଏ । ତାଙ୍କ ପରି ଭାଗ୍ୟବାନ୍ ଆଉ କିଏ ? ଏତେ ସୁନା କାହା ପାଖରେ ଅଛି ?

ମେରିଗୋଲ୍ଡ୍ ବାର ତେର ବର୍ଷର ଝିଅ—ଗୋଟିଏ ଫୁଲରେ ଗଢ଼ା । ଦେହର ରଙ୍ଗ ଗୌର । ମୁଣ୍ଡର ବାଳଗୁଡ଼ିକ ରେଶମ ପରି କଅଁଳ, ଚକ୍‌ଚକ୍ । ତାକୁ ଯିଏ ଦେଖେ, ଘଡ଼ିଏ ଚାହିଁ ରହିଯାଏ । ଏପରି ସୁନ୍ଦରୀ ଝିଅକୁ କେଉଁ ବାପ ଭଲ ନ ପାଇବ ! ମିଡାସଙ୍କର ଗୋଟିଏ କାମ ହେଲା, ଆହୁରି ସୁନା ସଞ୍ଚିବା;

ଅନ୍ୟ କାମଟି ହେଉଛି ମେରିଗୋଲ୍ଡ଼କୁ ଆଦର କରିବା । ତାର ମଧୁର କଥା ଶୁଣିଲେ ରାଜା ମିଦାସ ଦୁନିଆର ସବୁକଥା ଭୁଲିଯାଆନ୍ତି ।

ସକାଳେ ପୂର୍ବ ଦିଗରେ ନାଲି ଟହ ଟହ ସୂର୍ଯ୍ୟ ଉଦୟ ହେଉଛକ୍ଷଣି ତାଙ୍କର ସୁନେଲି କିରଣ ପୃଥିବୀ ଉପରେ ପଡ଼େ । ମିଦାସ ଭାବନ୍ତି, ସୂର୍ଯ୍ୟ କିରଣରେ ସବୁ ଜିନିଷ ସୁନେଲି ରଙ୍ଗ ଧରୁଛନ୍ତି; ସତକୁସତ ସୁନା ହୋଇ ଯାଆନ୍ତେ କି ? ଯେତେବେଳେ ମେରିଗୋଲ୍ଡ଼ ବଗିଚାରୁ କୌଣସି ହଳଦିଆ ଫୁଲ ତୋଳି ଆଣି ବାପାଙ୍କୁ ଦିଏ, ସେତେବେଳେ ମିଦାସ କହନ୍ତି, "ଏଗୁଡ଼ାକ ତୋଳିବାରେ କି ଲାଭ ? ସୁନାର ଫୁଲ ହୋଇଥିଲେ କେଡ଼େ ଭଲ ହୋଇଥାନ୍ତା ।" ଅତି ସୁନ୍ଦର ସୁଗନ୍ଧି ଗୋଲାପଫୁଲ ମଧ୍ୟ ରାଜାଙ୍କୁ ଭଲ ଲାଗେ ନାହିଁ । ସେ କହନ୍ତି, "ଏ ସବୁ ସୁନାର ହୋଇଥିଲେ ସିନା ଉପକାରରେ ଲାଗନ୍ତା ।

ରାଜାଙ୍କର ସୁନାରେ ଲୋଭ ଏପରି ବଢ଼ିଗଲା ଯେ ସେ ଦିନରାତି ଖାଲି 'ସୁନା' କଥା ଚିନ୍ତା କଲେ । ରାଜବାଟୀରେ ସୁନା ରଖିବା ପାଇଁ ଗୋଟାଏ ଭଣ୍ଡାର ଘର ଥାଏ । ସେ ଘରେ ଲୁହାର କବାଟ ଲାଗିଥାଏ । ତାର ଚାବି ରାଜା ନିଜେ ରଖିଥାନ୍ତି । ପ୍ରତିଦିନ ସେ ଅନେକ ବେଳଯାଏ ସେଇ ଘରେ ରହନ୍ତି । ଘର ଭିତର ପାଖ କବାଟ ବନ୍ଦ କରି ସେ ସୁନାକୁ ଏପାଖ ସେପାଖ କରି ଦେଖନ୍ତି; କେତେଥର ମୋହର ଗୁଡ଼ାକ ଗଣନ୍ତି । ମୋହରର ଶବ୍ଦ ତାଙ୍କ କାନକୁ ଭାରି ଭଲ ଲାଗେ । ରାଜବାଟୀରେ ବେଳେ ବେଳେ ନାଚ ଗୀତ ହୁଏ, କିନ୍ତୁ ରାଜା ସେ ସବୁ ଶୁଣିବାକୁ ଭଲ ପାଆନ୍ତି ନାହିଁ । ସୁନା ମୋହରର ଶବ୍ଦ ଶୁଣିଲେ ତାଙ୍କ ମନ ତୃପ୍ତ ହୋଇଯାଏ ।

ସୁନା ଛଡ଼ା ଅନ୍ୟ ଜିନିଷ ଛୁଇଁବାକୁ ତାଙ୍କ ମନ ହୁଏ ନାହିଁ । ଅବଶ୍ୟ ତାଙ୍କର ଖାଇବା ପିଇବା ପାଇଁ ବାସନ ସବୁ ସୁନାର ଥିଲା ।

କିନ୍ତୁ ଅନ୍ୟ ସବୁ ଜିନିଷ ଭିତରୁ କିଏ କାଠର, କିଏ କାଚର, କିଏ ରୁପାର ବା କଂସାର । ରାଜାଙ୍କୁ ସେ ସବୁ ଜିନିଷ ଭଲ ଲାଗୁ ନ ଥିଲା । ସେ ଭାବନ୍ତି, ସୁନାହିଁ ଜୀବନର ସବୁ ।

ଦିନେ ରାଜା ଭଣ୍ଡାର ଘରେ ବସି ମୋହର ସବୁ ଗଣି ରଖୁଛନ୍ତି । ବେଳେ ବେଳେ ମୋହରର ଶବ୍ଦ ଶୁଣି ସେ ଆନନ୍ଦରେ ଅଧୀର ହୋଇ ପଡ଼ୁଛନ୍ତି । ଗୋଟିଏ ଛୋଟ ଝରକାବାଟେ ସୂର୍ଯ୍ୟ-କିରଣ ଆସି ସୁନାଗୁଡ଼ାକୁ ଆହୁରି ଚକ୍ ଚକ୍ କରିଦେଉଛି । ତାଙ୍କ ଆଖି ଝଲସି ଯାଉଛି । ଏହି ସମୟରେ ସେ ଦେଖିଲେ— କାନ୍ଥକୁ ଲାଗି କିଏ ଜଣେ ଛିଡ଼ା ହୋଇଛି । ସେ ହଠାତ୍ କବାଟ ଆଡ଼କୁ ଚାହିଁଲେ । ପ୍ରଥମେ ତାଙ୍କର ସନ୍ଦେହ ହୋଇଥିଲା ଯେ ସେ ଭୁଲରେ କବାଟ ବନ୍ଦ କରି ନ ଥିଲେ—ଏଥି ମଧ୍ୟରେ ସୁନା ଚୋରି କରିବା ପାଇଁ କେହି ଜଣେ ଘରେ ପଶି ଯାଇଛି । କିନ୍ତୁ କବାଟ ବନ୍ଦ ଥିବାର ଦେଖି ସେ ସେହି ଲୋକ ଆଡ଼କୁ ଭଲ କରି ଚାହିଁଲେ । ତାଙ୍କ ହସ ହସ ମୁହଁରୁ ଗୋଟାଏ ଜ୍ୟୋତି ବାହାରୁଛି । ଏବେ ରାଜା ବୁଝିପାରିଲେ, ଏଇଟି କୌଣସି ସାଧାରଣ ମନୁଷ୍ୟ ନୁହେଁ । ହୁଏତ ସ୍ୱର୍ଗର କୌଣସି ଦେବତା । ଦେବତା ନୋହିଥିଲେ କବାଟ ବନ୍ଦ ଥିବା ବେଳେ ଘର ଭିତରକୁ ଆସନ୍ତା କିପରି ?

ଏହି ଦେବତା ରାଜାଙ୍କୁ ଚାହିଁ କହିଲେ, "ମିଦାସ, ଦେଖୁଛି ତୁ ଖୁବ୍ ଧନୀଲୋକ । ଏତେ ସୁନା ରଖିଛୁ । ବେଶ୍ ସୁଖରେ ଥିବୁ ।"

ରାଜା ଅତି ନମ୍ରଭାବରେ ପ୍ରଣାମ କରି କହିଲେ, "ପ୍ରଭୁ, ଏତିକ ମାତ୍ର ମୋର ସମ୍ପତ୍ତି । କେତେ ବର୍ଷ ହେଲା ଲାଗି ଲାଗି ଏତିକ ସୁନା ସଂଗ୍ରହ କରିଛି । ସେତେ ବେଶି କଅଣ ? ହଜାର ବର୍ଷ ବଞ୍ଚିଲେ ଅବା ମନମୁତାବକ ସୁନା ଜମା କରିପାରନ୍ତି । କିନ୍ତୁ ମଣିଷ କଣ ଏତେ କାଳ ବଞ୍ଚିବ ?"

ଦେବତା କହିଲେ, "ତେବେ ଏତକ ସୁନାରେ ତୋ ମନରେ ସନ୍ତୋଷ ଆସି ନାହିଁ ? ତୋର ଆହୁରି ସୁନା ଦରକାର ?"

ମିଦାସ ଦେଖିଲେ, ସ୍ୱର୍ଗର କେଉଁ ଦେବତା ତାଙ୍କ ଭଣ୍ଡାର ଘରେ ଉଭା ହୋଇଛନ୍ତି । ଦେବତା ଇଚ୍ଛା କଲେ ତାଙ୍କ ମନର କାମନା ନିଶ୍ଚୟ ପୂର୍ଣ୍ଣ ହୋଇ ପାରିବ । ଏପରି ସୁଯୋଗ ଛାଡ଼ିବାର ନୁହେଁ ।

ସେ ଦେବତାଙ୍କ ପାଦ ତଳେ ପଡ଼ି କହିଲେ, 'ପ୍ରଭୁ, ଆପଣ ମୋ ମନକଥା ଅବଶ୍ୟ ଜାଣିପାରିଅଛନ୍ତି । ଏଇ ସାମାନ୍ୟ ସୁନାରେ ମୋର ମନରେ ତୃପ୍ତି ଆସୁନାହିଁ । ଆଉ କେତେ କାଳ ଲାଗି ପଡ଼ି କେତେ ସୁନା ଜମାଇ ପାରିବ ? ମୋ ଉପରେ ଦୟାକରି ଆପଣ ଏଠାରେ ବିଜେ କରିଛନ୍ତି । ଆପଣ ଇଚ୍ଛା କଲେ ମୋର ମନର ଦୁଃଖ ଗୁଚିଯିବ । ମୁଁ ମନ ଇଚ୍ଛା ସୁନା ରଖିପାରିବି ।"

ଦେବତା କହିଲେ, ବେଶ୍ ମୁଁ ତୋର ଦୁଃଖ ଦୂର କରିବି । କହ, ତୋର କଅଣ ଦରକାର ?"

ରାଜା ମିଦାସ ଆନନ୍ଦରେ ନାଚି ଉଠିଲେ । ସେ ପ୍ରାର୍ଥନା କଲେ, "ପ୍ରଭୁ, ମୋତେ ଏତିକି ଶକ୍ତି ଦିଅନ୍ତୁ ଯେ ମୁଁ ଯାହା ଛୁଇଁବି ତାହା ସୁନା ପାଲଟି ଯିବ ।"

ଦେବତା ଟିକିଏ ହସି କହିଲେ, "ଓଃ, ଏଇ କଥା । ହଁ, ମୁଁ ତୋତେ ସେ ଶକ୍ତି ଦେଇପାରେ । କିନ୍ତୁ ଏ ବର ନେବା ପୂର୍ବରୁ ଆହୁରି ଭାବିଚିନ୍ତି ଦେଖ—ଏତିକି ଶକ୍ତି ପାଇଲେ ତୁ ସୁଖରେ ଜୀବନ କଟାଇ ପାରିବୁ ତ ?"

ରାଜା ମିଦାସ ଦେବତାଙ୍କର କଥାରୁ ବର ମିଳିବାର ଆଶା ପାଇ କହିଲେ, "ମୁଁ ଭାବିଚିନ୍ତି ଏ ବର ମାଗୁଛି । ଏହି ବର ମିଳିଲେ ମୋର ସୁଖର ମାତ୍ରା ପୂର୍ଣ୍ଣ ହେବ । କିଛି ଚିନ୍ତା ରହିବ ନାହିଁ ।'

ଦେବତା 'ତଥାସ୍ତୁ' କହି ବୁଝାଇ ଦେଲେ—ତା ପରଦିନ ସକାଳୁ ବରର ଫଳ ମିଳିବ। ସଙ୍ଗେ ସଙ୍ଗେ ଘର ଭିତରେ ଆଲୁଅରେ ମିଦାସଙ୍କର ଆଖି ବୁଜି ହୋଇଗଲା। ସେ ଆଖି ଖୋଲିଲା ବେଳକୁ ଦେଖନ୍ତି ଘରେ ସେ ଦେବତା ନାହାନ୍ତି।

ସେ ଦିନଟିଯାକ ରଜାଙ୍କ ମନ ଅସ୍ଥିର। ଖାଇବା ପିଇବା କାହିଁରେ ମନ ଲାଗୁ ନାହିଁ। ମେରିଗୋଲ୍ଡ ବାପାଙ୍କ ପାଖକୁ ଆସି ଆଦରରେ କେତେ କଥା ପଚାରିଲା। ମାତ୍ର ମିଦାସ ତାର କଥା ଶୁଣି ମଧ୍ୟ ଶୁଣିପାରୁନାହାନ୍ତି। ତାଙ୍କ ମନରେ ଏକମାତ୍ର ଚିନ୍ତା— ସତେ କଅଣ ଦେବତାଙ୍କ କଥା ଫଳିବ? ସତେ ସେ ଯାହା ଛୁଇଁଦେବେ ତାହା ସୁନା ହୋଇଯିବ?

ରାତିରେ ଖାଇ ପିଇ ରଜା ଶୋଇବାକୁ ଗଲେ, ମାତ୍ର ତାଙ୍କ ଆଖିକି ନିଦ ଆସିଲା ନାହିଁ। ରାତିଟା ତାଙ୍କୁ ବହୁତ ଲମ୍ବା ଜଣାଗଲା। ପାହାନ୍ତିଆ ହୋଇ ଆସିଲା। ପକ୍ଷୀମାନେ ରାବ ଉଠିଲେ। ସୁଲୁ-ସୁଲିଆ ପବନ ବହିଲା। ରଜା ବିଛଣାରୁ ଉଠିପଡ଼ିଲେ। ସେ ନିଜ ଖଟକୁ ଚାହିଁଲେ। ସକାଳ ହୋଇଗଲାଣି। ତେବେ ଖଟଟା ସୁନା ହୋଇଗଲା ନାହିଁ କାହିଁକି? ତାଙ୍କ ମନ ମରିଗଲା। ଦେବତା କଣ ତାଙ୍କୁ ଠକିଦେଇ ଗଲେ? ସେ ହତାଶ ହୋଇ ଘର ଭିତରେ ଚାରିଆଡ଼କୁ ଚାହିଁଗଲେ।

ଏହି ସମୟରେ ଝରକାବାଟେ ସୂର୍ଯ୍ୟ କିରଣର ଗୋଟିଏ ରେଖା ତାଙ୍କ ଖଟ ଉପରେ ପଡ଼ିଗଲା। ସେ ଖଟ ଉପରୁ ଉଠି ଝରକା ଖୋଲିଦେଲେ। ଝିଲିକାଏ ସୂର୍ଯ୍ୟକିରଣ ଘର ଭିତରେ ପଶିଗଲା। ଖଟଟା ତାଙ୍କୁ ହଳଦିଆ ଦିଶିଲା। ସେ ଦୌଡ଼ିଆସି ବିଛଣା ଚାଦରଟାକୁ ଟେକିବାକୁ ଚେଷ୍ଟା କଲେ। ଦେଖନ୍ତି, ଚାଦରଟା ସୁନା ହୋଇଯାଇଛି। ତାଙ୍କ ଆନନ୍ଦ ଆଉ କହିଲେ ନ ସରେ।

ଦେବତା ମିଛ କହୁନାହାନ୍ତି; ସେ ଯାହା ଛୁଇଁବେ ସୁନା ହୋଇଯିବ । ସେ ଘର ଭିତରେ ଯାହା କିଛି ଦେଖିଲେ ସବୁ ଛୁଇଁଗଲେ । ସଙ୍ଗେ ସଙ୍ଗେ ସେ ସବୁ ସୁନା ହୋଇଗଲା । ସେ ଟିକିଏ ରହିଯାଇ ଘରର ପାଖକୁ ଉହିଁଲେ । ସୁନାର ଘର, ସୁନା କାନ୍ଥ, ସୁନା କବାଟ, ସୁନା ଝରକା, ସୁନା ଖଟ, ସୁନା ଟେବୁଲ, ସୁନାର ସବୁ ଆସବାବ । ତାଙ୍କପରି ଧନୀ ଜଗତରେ ଆଉ କେହି ନ ଥିବେ । ତାଙ୍କ ପୋଷାକ ମଧ୍ୟ ସୁନାର ।

ସେ ଚଷମାଟା ଟେକି ନେଇ ଆଖିରେ ଲଗାଇ ଦେଖନ୍ତିତ, ଚଷମାର କାଚ ମଧ୍ୟ ସୁନା ପାଲଟି ଯାଇଛି; ଆଖିକୁ କିଛି ଦେଖା ଯାଉ ନାହିଁ । ସେ ଚଷମାକୁ କାଢି ଟେବୁଲ ଉପରେ ରଖିଦେଲେ । ଭାବିଲେ, ଚଷମା ନ ହେଲେ ମୋର ଚଳିଯିବ । ମେରିଗୋଲ୍ଡ଼ ପାଠ ପଢ଼ିଲାଣି । ସେ ବହି ପଢ଼ି ମୋତେ ଶୁଣାଇବ ।”

ମିଡାସଙ୍କ ମନ ଅଥୟ । ଖାଲି ଘରଟା ସୁନା ହୋଇଛି । ସେ ସମଗ୍ର ରାଜବାଟୀକୁ ସୁନା ନ କରି ଛାଡ଼ିବେ ନାହିଁ । ସେ ଘରକୁ ଘର ବୁଲି ସବୁ ଛୁଇଁଗଲେ । ସେ ଯାହା କିଛି ଛୁଇଁ ଦିଅନ୍ତି, ତାହା ସୁନା ପାଲଟିଯାଏ । ସେତେବେଳେ ଗର୍ବରେ ତାଙ୍କ ଛାତି ଫୁଲିଉଠେ ।

ରାଜା ବଗିଚାକୁ ପଶିଗଲେ । କେତୋଟି ଗଛକୁ ଛୁଇଁଦେଲାକ୍ଷଣି ତାହା ସୁନା ପାଲଟି ଗଲା । ସୁନାର ଗଛରେ ସୁନାର ପତ୍ର, ସୁନାର କଢ଼ ଓ ଫୁଲ ଦେଖି ରାଜାଙ୍କ ମନ ଆନନ୍ଦରେ ପୂରିଗଲା । ବଗିଚାରେ କେତେଗୁଡ଼ିଏ ଗୋଲାପ ଗଛ ଥିଲା । ଆଗେ ରାଜା ସେଗୁଡ଼ିକୁ ଖୁବ୍ ଭଲ ପାଉଥିଲେ । ଟେବୁଲ ଉପରେ ଫୁଲଦାନିରେ ଦୁଇ ଚାରିଟା ଗୋଲାପ ଫୁଲ ନ ଥିଲେ ସେ ଚାକରଙ୍କ ଉପରେ ବିରକ୍ତ ହେଉଥିଲେ । ଏବେ ଗୋଲାପ ଫୁଲକୁ ତାଙ୍କର ଆଦର ନ ଥିଲା;

ମାତ୍ର ମେରିଗୋଲ୍‌ଡର ଗୋଲାପ ଗୁଡ଼ିକ ଅତି ପ୍ରିୟ । ସେ କେତୋଟି ଗୋଲାପ ନେଇ ତାର ରେଶମି ବାଳରେ ଖୋସିଦିଏ । ସେତେବେଳେ ସେ ଭାରି ସୁନ୍ଦର ଦିଶେ । ରାଜା ଗୋଲାପ ବଗିଚାଯାକ ବୁଲି ସବୁ ଗଛ, ଡାଳ, ପତ୍ର, ଫୁଲକୁ ସୁନା କରିଦେଲେ ।

ବୁଲିଆଡ଼ି ବୁଲି ବୁଲି ରାଜାଙ୍କୁ ଭୋକ ହେଲା । ସେ ଖାଇବା ପାଇଁ ଟେବୁଲ ପାଖେ ବସିଗଲେ । ଚାକର ଗୋଟିଏ ଗିଲାସରେ ପାଣି ଓ କେତେଗୁଡ଼ିଏ ପ୍ଲେଟରେ ନାନା ରକମର ଖାଦ୍ୟ ଜିନିଷ ରଖିଦେଇ ଗଲା ।

ଏହି ସମୟରେ ମେରିଗୋଲ୍‌ଡ ହାତରେ ଗୋଟାଏ ସୁନାର ଗୋଲାପଫୁଲ ଧରି ଆସି କାନ୍ଦ କାନ୍ଦ କହିଲା, "ବାପା, ମୁଁ ବଗିଚାକୁ ଗୋଲାପ ଫୁଲ ଆଣିବାପାଇଁ ଯାଇଥିଲି । ଗଛଗୁଡ଼ାକ ସବୁ ହଳଦିଆ ହୋଇଯାଇଛି; ଏତେ ଟାଣ ଯେ ମୁଁ ବହୁତ କଷ୍ଟରେ ଏଇ ଗୋଟିକ ଫୁଲ ଛିଣ୍ଡା'ଇ ଆଣିଛି । ପୁଣି ଏ ଫୁଲର ସୁଗନ୍ଧ କୁଆଡ଼େ ଗଲା ? ସେ ମାଳି ବଗିଚାକୁ ଖରାପ କରିଦେଇଛି ।"

ରାଜା ଅସଲ କଥା ଜାଣିପାରି କହିଲେ, "ମାଆ, ତୁ ପିଲାଲୋକ; ବୁଝି ପାରୁ ନାହୁଁ । ଆଗେ ଯେଉଁ ଫୁଲ ଥିଲା, ତାର ଦାମ୍ କେଇଟା ପଇସା ହୋଇଥାନ୍ତା । ଏବେ ସେ ଫୁଲ ସୁନା ହୋଇଯାଇଛି । ତାର ଦାମ୍ ଶହ ଶହ ଟଙ୍କା ହେବ ।"

ମାତ୍ର ଏଥିରେ ମେରିଗୋଲ୍‌ଡର ଦୁଃଖ କମିଲା ନାହିଁ; ବରଂ ବଢ଼ିଲା । ତାର କାନ୍ଦ ଦେଖି ମିଦାସଙ୍କ ମନ ଟିକିଏ ଖରାପ ହେଲା । ସେ ଝିଅକୁ କହିଲେ, "ଆଚ୍ଛା, ତୋ ପାଇଁ ଭଲ ଭଲ ଫୁଲ ଆଣି ଦେବା । ଏବେ ତୁ ଆସି ମୋ ସାଥିରେ ଖାଆ ।

ମେରିଗୋଲ୍‌ଡ଼ ଗୋଟିଏ ଚୌକିରେ ଟେବୁଲ ପାଖେ ବସି ପଡ଼ିଲା । ରାଜା କଫି ପିଇବା ପାଇଁ କପ୍‌ଟି ଟେକିବା ମାତ୍ରେ ତାହା

ସୁନାର କପ୍ ହୋଇଗଲା । ସେ ଗୋଟିଏ ପ୍ଲେଟରେ କଫି ଢାଳିବାକୁ ବସିଲେ । ମାତ୍ର କପ୍‌ରୁ କଫି ନ ବାହାରି ତରଳ ସୁନା ବାହାରିଲା । ସେ ତାକୁ ପିଇ ନ ପାରି ପୁଣି ଟେବୁଲ ଉପରେ ରଖିଦେଲେ ।

ସେତେବେଳକୁ ମିଡାସଙ୍କୁ ବଡ଼ ଶୋଷ । ସେ କଫି ପିଇ ନପାରି ଦୁଃଖରେ କହିଲେ, "ଓଃ, ପିଇବି କପରି ?"

ବାପାଙ୍କ ଏହି କଥା ଶୁଣି ମେରିଗୋଲ୍ଡ ଚମକି ପଡ଼ିଲା । ସେ ପଚାରିଲା, "ବାପା, କଫି ପିଇଲ ନାହିଁ କାହିଁକି ?"

ଝିଅର ମନ ଭୁଲାଇବା ପାଇଁ ମିଡାସ କହିଲେ, "ନାଁ, ସେ କିଛି ନୁହେଁ । ତୁ ତୋର ଦୁଧ ପିଇଦେ ।"

ଟେବୁଲ ଉପରୁ ସେ ଯାହା କିଛି ପାଟି ପାଖକୁ ନେଇ ଖାଇବାକୁ ବସିଲେ, ସେ ସବୁ ସୁନା ହୋଇଗଲା । ସୁନାର ଡିମ୍ବ, ସୁନାର ରୁଟି, ସୁନାର ମାଛ, ସୁନାର ମାଂସ—ଏସବୁ କଅଣ ମଣିଷ ଖାଇପାରେ ! ମିଡାସ ଆକୁଳ ହୋଇ ମେରିଗୋଲ୍ଡ଼ ଆଡ଼କୁ ଅନେଇଲେ । ମେରିଗୋଲ୍ଡ ଦେଖିଲା, ବାପାଙ୍କ ମନ ଭଲ ନାହିଁ—ଆଖି ଲୁହରେ ଛଳ ଛଳ । "ବାପା, ତମ ମନ କାହିଁକି ଭଲ ନାହିଁ ?" ଏତିକି କହି ମେରିଗୋଲ୍ଡ଼ ଉଠିପଡ଼ି ବାପାଙ୍କ ପାଖକୁ ଚାଲିଗଲା । ଝିଅ ପାଖକୁ ଆସିଲାକ୍ଷଣି ସେ ତାକୁ କୁଣ୍ଢାଇ ଚୁମ୍ବନ ଦେବାକୁ ଗଲେ । ମାତ୍ର କି ଭୀଷଣ ପରିବର୍ତ୍ତନ ! ମେରିଗୋଲ୍ଡ ତତ୍‌କ୍ଷଣାତ୍ ସୁନା ପାଲଟିଗଲା । ମିଡାସଙ୍କର ଆଖି ଖୋସି ହୋଇଗଲା । ଆଗରେ ତାଙ୍କର ଝିଅ ନାହିଁ, ତାର ହସ ହସ ମୁହଁ ନାହିଁ, ତୁଣ୍ଡରୁ ମଧୁର ଦବୋଟି କଥା ବାହାରୁନାହିଁ—ଅଛି ଗୋଟିଏ ସୁନାର ପିତୁଳା ।

ମିଡାସଙ୍କର ମୁହଁ କଳା ପଡ଼ିଗଲା; ସେ ଖେ ଖେ କାଢ଼ ଉଠିଲେ । ସେ ଆକୁଳ ହୋଇ ସେଇ ସୁନା ପିଲ୍ଲାକୁ କୁଣ୍ଢାଇ କାନ୍ଦବାକୁ ଲାଗିଲେ । ପିଲ୍ଲାର ମୁଣ୍ଡର ସୁନା ବାଳଗୁଡ଼ାକ ମଧ୍ୟ ତାଙ୍କୁ ଖରାପ ଲାଗିଲା । ଓଃ ! ସେ କଅଣ କଲେ ?

ମିଡାସଙ୍କର ଅବସ୍ଥା କହିଲେ ନ ସରେ । ସେ ପିଲ୍ଲାକୁ ଧରି ରହିପାରିଲେ ନାହିଁ କି ତା ପାଖ ଛାଡ଼ି ଯାଇପାରିଲେ ନାହିଁ । ଦୁନିଆରେ ତାଙ୍କଠାରୁ ବଳି ହୀନ ଲୋକ ଆଉ କେହି ଥିବ ବୋଲି ସେ ଭାବି ପାରିଲେ ନାହିଁ । ସେ ମନେ ମନେ ବିଚାରିଲେ, "ମୋର ଏସବୁ ସୁନା କିଏ ନେଇଯାଉ । ଧନ ସମ୍ପତ୍ତି ଯାଉ । ଖାଲି ମୋ ପ୍ରାଣର ସଙ୍ଗାଳି ମେରିଗୋଲ୍ଡ଼କୁ କେହି ଫେରାଇ ଦେଉ । ମୁଁ ତାକୁ ନେଇ ଭିକ ମାଗି ବୁଲିଲେ ମଧ୍ୟ ମୋର ଦୁଃଖ ରହିବ ନାହିଁ ।" ସେ ବିକଳରେ ଚାରିଆଡ଼କୁ ଚାହିଁଲେ; ସତେ ଅବା ଅତଳ ସମୁଦ୍ରରେ ସେ ବୁଡ଼ିଯାଇ ଆଶ୍ରୟ ଖୋଜୁଛନ୍ତି ।

ଏହି ସମୟରେ ପୁଣି ଘର ଭିତରେ ସେହି ଦେବମୂର୍ତ୍ତି ଦେଖାଦେଇ ପଚାରିଲେ, "ମିଡାସ, ତୁ ଯେଉଁ ବର ପାଇଛୁ ସେଥିରେ ସନ୍ତୁଷ୍ଟ ଅଛୁ ତ ?"

ମିଡାସ ଦେବତାଙ୍କ ପାଦ ତଳେ ପଡ଼ି କହିଲେ "ପ୍ରଭୁ, ମୁଁ ଯେଉଁ ବର ମାଗିଥିଲି, ସେ ବର ନୁହେଁ, ଘୋର ଅଭିଶାପ । ଜଗତରେ ଏବେ ମୋଭଳି ଦୁଃଖୀ କେହି ନ ଥିବେ । ଏତେ ସୁନା ଭିତରେ ରହି ମଧ୍ୟ ମୁଁ ଟିକିଏ ହେଲେ ସୁଖ ପାଇନାହିଁ । ଯେଉଁ ସ୍ନେହ ଶ୍ରଦ୍ଧା ପାଇଁ ମଣିଷ ବଞ୍ଚି ରହିବାକୁ ଚାହେଁ ତା ମୋର ନାହିଁ । ମୋର ଝିଅକୁ ଦେଖନ୍ତୁ । ଏ ସୁନାର ପିଲ୍ଲାକୁ କି ସ୍ନେହ କରି ହେବ ? ମୋର ସୁନାରେ ଦରକାର ନାହିଁ । ମୋତେ ଦୟା

କରନ୍ତୁ । ଆପଣଙ୍କ ବର ଫେରାଇ ନିଅନ୍ତୁ । ମୋତେ ମୋର ମେରି-ଗୋଲ୍ଡ଼କୁ ଦିଅନ୍ତୁ ।"

ଦେବତା କହିଲେ, "ତେବେ ଏଥିଭିତରେ ତୁ କିଛି ଶିଖିଛୁ । ଏବେ କହିଲୁ—ସୁନାର ମୂଲ୍ୟ ବେଶି ନା ଗିଲାସେ ପାଣିର ମୂଲ୍ୟ ବେଶି ?"

ମିଦାସ—"ବିଧାତା ମଣିଷ ପାଇଁ ଯେଉଁ ପାଣି ସୃଷ୍ଟି କରିଛନ୍ତି ତାର ମୂଲ୍ୟ ନିଶ୍ଚୟ ବେଶି । ସତେ ମୁଁ ପୁଣି ସେ ଅମୂଲ୍ୟ ପାଣି ପିଇପାରିବ ?"

ଦେବତା—"ଆଚ୍ଛା, ଖଣ୍ଡିଏ ରୁଟି ଚାହୁଁ କି ସୁନା ଚାହୁଁ ?"

ମିଦାସ– "ଖଣ୍ଡେ ରୁଟି ସାଙ୍ଗରେ ପୃଥିବୀ ଯାକର ସୁନା ସମାନ ହୋଇ ନ ପାରେ । ରୁଟି ମନୁଷ୍ୟର ପ୍ରାଣ ରକ୍ଷା କରିବ, ସୁନା କଅଣ ତା କରିପାରିବ ?"

ଦେବତା—"କହ ଦେଖି, ତୁ ସଂସାରର ସବୁ ସୁନା ନେବାକୁ ଚାହୁଁ ନା ମେରିଗୋଲ୍ଡକୁ ଫେରି ପାଇବାକୁ ଚାହୁଁ ?"

ମିଦାସ—"ମୋର ସୁନା ଲୋଡ଼ା ନାହିଁ; ଧନ ସମ୍ପତ୍ତି କିଛି ମୁଁ ଚାହେଁ ନାହିଁ । ମୋର ମେରିଗୋଲ୍ଡ଼କୁ ଫେରାଇ ଦିଅନ୍ତୁ । ମୋତେ ଏତିକି ଅନୁଗ୍ରହ କରନ୍ତୁ ।"

ଦେବତା—"ଯାହାହେଉ, ତୋର ସୁବୁଦ୍ଧି ଆସିଛି । ତୋର ହୃଦୟଟା ପଥର ହୋଇଯାଇନାହିଁ । ଏବେ ତୁ ଶିଖିଲୁ—ଭଗବାନ ପାଣି, ପବନ, ଖାଦ୍ୟ ଭଳି ଯେଉଁସବୁ ସାମାନ୍ୟ ଜିନିଷ ମନୁଷ୍ୟ ଜାତିପାଇଁ ଗଢ଼ି ରଖିଛନ୍ତି, ତାର ମୂଲ୍ୟ ସୁନା ରୁପାର ମୂଲ୍ୟଠାରୁ ଢେର୍ ବେଶି । ବର୍ତ୍ତମାନ କହ ଦେଖି, ତୁ ଏହି ବର ରଖିବାକୁ ଚାହୁଁ ?"

ମିଦାସ – "ନାଁ ନାଁ, ମୋର ସେ ବର ଆଦୌ ଲୋଡ଼ା ନାହିଁ । ଜଗତରେ ଯଦି କିଛି ଘୃଣାର ବସ୍ତୁ ଥାଏ, ତେବେ ସେ ହେଉଛି ସୁନା । ଆପଣଙ୍କ ବର ଫେରାଇ ନେଇ ମୋତେ ରକ୍ଷା କରନ୍ତୁ ।"

ଏହି ସମୟରେ ଗୋଟିଏ ମାଛି ଉଡ଼ିଆସି ରାଜାଙ୍କ ନାକ ଉପରେ ବସିଗଲା । ସଙ୍ଗେ ସଙ୍ଗେ ସେ ସୁନାର ମାଛିରେ ପରିଣତ ହୋଇ ତଳକୁ ଖସିପଡ଼ିଲା । ରାଜାଙ୍କ ଦେହ ଘୃଣାରେ ଥରି ଉଠିଲା । ଯେଉଁ ସୁନା କାଲି ତାଙ୍କ ଜୀବନର ସର୍ବସ୍ୱ ଥିଲା, ଆଜି ତାହା ପ୍ରତି ତାଙ୍କର ଚରମ ଘୃଣା ।

ଦେବତାଙ୍କ ହୃଦୟ ରାଜାଙ୍କ ଦୁଃଖରେ ତରଳି ଗଲା । ସେ ସ୍ନେହରେ କହିଲେ, "ରାଜା, ତୋର ଝିଅକୁ ଫେରି ପାଇବୁ । ମୁଁ ମୋର ବର ଫେରାଇ ନେଉଛି । ବଗିଚା ମୁଣ୍ଡରେ ଯେଉଁ ନଈ ବହି ଯାଉଛି, ଯାଆ ସେଥିରେ ବୁଡ଼ ଗାଧୋଇବୁ । ଗୋଟିଏ ପାତ୍ରରେ ସେଥିରୁ ଜଳ ଆଣି ଆସିବୁ । ତୁ ଯାହା ସବୁ ଛୁଇଁ ସୁନା କରିଛୁ, ତାହା ଉପରେ ସେହି ଜଳ ଢାଳିଲେ ସେ ସବୁ ପୂର୍ବ ରୂପ ଫେରି ପାଇବେ । ଏହା କରିପାରିଲେ ତୋର ସୁନା ପାଇଁ ଲୋଭ ତୁଟିଯିବ । ଈଶ୍ୱରଙ୍କ ସୃଷ୍ଟିକୁ ଭଲ ପାଆ । ଧନର ଲୋଭ ଛାଡ଼ଦେ ।"

ରାଜା ମିଦାସ କୃତଜ୍ଞତା ପ୍ରକାଶ କରି ଦେବତାଙ୍କ ପାଦତଳେ ପଡ଼ି ମନେ ମନେ ପ୍ରତିଜ୍ଞା କଲେ, "ଆଉ କେବେ ହେଲେ ଧନ ଲୋଭ କରିବି ନାହିଁ । ଈଶ୍ୱର ଯାହା କିଛି ସୃଷ୍ଟି କରିଛନ୍ତି ତାକୁ ଭଲ ପାଇବି ।"

ରାଜା ଉଠି ଦେଖିଲେ ଦେବତା ଉଭେଇ ଯାଇଛନ୍ତି ।

ମୁହୂର୍ତ୍ତେ ଡେରି ନକରି ରାଜା ନଈକୁ ଦଉଡ଼ିଲେ । ଦେହରୁ ପୋଷାକ କାଢ଼ିବା କଥା ଭୁଲିଯାଇ ସେ ନଈ ଭିତରକୁ ପଶି

ପାଣିରେ ବୁଡ଼ ଉଠିଲେ । ଥଣ୍ଡା ପାଣି ବାଜଲାରୁ ତାଙ୍କ ଦେହ ସହିତ ମନ ବି ଥଣ୍ଡା ହୋଇଗଲା । ସେ ମନେକଲେ ତାଙ୍କ ଗ୍ରୀବା ଉପରୁ ଗୋଟାଏ ବୋଝ ଖସିପଡ଼ିଲା । ସତେ କଅଣ ତାଙ୍କର ଅଭିଶପ୍ତ ବର ଚାଲିଯାଇଛି !

ସେ ମାଠିଆଏ ପାଣି ଧରି ନଈ ଉପରକୁ ଆସିଲେ । ନଈ କୂଳରେ ଗୋଟାଏ ଅନାବନା ଗଛ ଥିଲା । ତାକୁ ସେ ଥରେ ଦୁଇ ଥର ଛୁଇଁଲେ । ଗଛଟା ସୁନା ପାଲଟିଲା ନାହିଁ । ତାଙ୍କ ମନରେ ବିଶ୍ୱାସ ଆସିଲା – ଠାକୁର ବର ଫେରାଇ ନେଇଅଛନ୍ତି ।

ପାଣି ମାଠିଆ ଧରି ସେ ପାଗଳ ପରି ଆଗ ମେରିଗୋଲ୍ଡ଼ ପାଖକୁ ଆସିଲେ ଓ ତା ଉପରେ ପାଣି ଢାଳିଦେଲେ । ଦେଖୁଁ ଦେଖୁଁ ମୁଣ୍ଡର ସୁନା ସୂତା ପରି ବାଳଗୁଡ଼ାକ ପୁଣି ଆଗ ରଙ୍ଗ ଧରିଲା । ମୁହଁରେ ପୁଣି ଗୋଲାପ ରଙ୍ଗର ଆଭା ଖେଳିଗଲା । ସୁନାର ଦେହ ଚାଲିଗଲା । ସେ ପୂର୍ବ ଦେହ ଧରି ଆଖି ମେଲି ଦେଖେ ତ, ବାପା ତା ଉପରେ ପାଣି ଢାଳୁଛନ୍ତି । ସେ ଆଶ୍ଚର୍ଯ୍ୟ ହୋଇ କହିଲା, "ବାପା, ବାପା, ଏ କଅଣ କରୁଛ ? ମୋ ଜାମା ଓଦା ହୋଇଗଲା । ମୋତେ ଶୀତ କରୁଛି ।"

ମିଡାସଙ୍କର ଆନନ୍ଦ ଦେଖେ କିଏ ? ସେ ଝିଅକୁ କୋଳକୁ ଟେକି ନେଇ ଚୁମା ଦେବାକୁ ଲାଗିଲେ । ରାଜା ପାଣି ମାଠିଆ ଧରି ରାଜବାଟୀର ଘରଦ୍ୱାର, ବାଡ଼ ବଗିଚା ସବୁଆଡ଼େ ପାଣି ସିଞ୍ଚିଗଲେ । ସବୁ ପୂର୍ବ ପରି ହୋଇଗଲା । ଝିଅକୁ ସେ ପୁଣି ଗୋଲାପ ବଗିଚାକୁ ନେଇଗଲେ । ମେରିଗୋଲ୍ଡ଼ ଦେଖିଲା, ଗଛରେ ଆଗଭଳି ଫୁଲ ଫୁଟିଛି । ସେ ଆନନ୍ଦରେ କେତୋଟି ଫୁଲ ତୋଳି ବାପାଙ୍କୁ ଦେଇ କହିଲା, "ଦେଖିଲ ବାପା, ଫୁଲଗୁଡ଼ିକ କେଡ଼େ ସୁନ୍ଦର !"

ମିଦାସଙ୍କର ସେହି ଦିନଠାରୁ ସୁନା-ଲୋଭ ଛୁଟିଗଲା । ସେ ଭଣ୍ଡାର ଘର ଫିଟାଇ ସବୁ ସୁନା ପ୍ରଜାଙ୍କ ଭିତରେ ବାଣ୍ଟିଦେଲେ । ସେମାନଙ୍କୁ କହିଲେ, "ଈଶ୍ୱର ଆମମାନଙ୍କ ପାଇଁ ଦେଇ ନାହାନ୍ତି କଅଣ ? ପାଣି ପବନ ଯିଏ ଯେତେ ନେଲେ ସରିବ ନାହିଁ । ପୃଥିବୀକୁ ଚାଷ କର । ଖାଦ୍ୟର ଅଭାବ ରହିବ ନାହିଁ ।"

ତାଙ୍କ ଦେଶର ଲୋକେ ସୁଖରେ ରହିଲେ । କେହି ପରଧନକୁ ଚାହିଁଲେ ନାହିଁ ।



# ପାଣ୍ଡୋରାର ବାକ୍ସ

ଆଜି ଆମେ ପୃଥିବୀକୁ ଯେପରି ଦେଖୁଛୁ, ହଜାର ହଜାର ବର୍ଷ ତଳେ ସେପରି ନଥିଲା । ଏବେ ଦେଖାଯିବ, କିଏ ବୁଢ଼ା, କିଏ ପିଲା, କିଏ ସୁସ୍ଥ, କିଏ ରୋଗୀ, କିଏ ଧନୀ, କିଏ ଗରିବ । ମାତ୍ର ସେଇ ପୂର୍ବ କାଳରେ ପୃଥିବୀ ଭିନ୍ନେ ଥିଲା । ସମସ୍ତେ ଥିଲେ ପିଲା । ପୁଅ ଝିଅ ସବୁ ଆନନ୍ଦରେ ଥିଲେ । କାହାର ରୋଗ ନଥିଲା କି କିଛି ଦୁଃଖ ନଥିଲା । କେହି ବୁଢ଼ା ହେଉ ନଥିଲେ କି ମରୁ ନଥିଲେ । ଖାଇବା ପିଇବା ବିଷୟରେ କାହାରି ଚିନ୍ତା ନଥିଲା । ଯାହାର ଯାହା ଇଚ୍ଛା ସେ ଗଛରୁ ତୋଳି ଆଣି ଖାଉଥିଲା । କେହି କାହାକୁ ମନା କରିବା ଶୁଣା ନଥିଲା । ମିହନ୍ତ କରି ଫସଲ ଆମଦାନି କରିବା, ରାନ୍ଧିବା ଏସବୁ ଦରକାର ପଡ଼ୁ ନଥିଲା ।

ବଡ଼ ଆଶ୍ଚର୍ଯ୍ୟର କଥା, ଏତେ ପିଲା ଥିଲେ, ହେଲେ ସେମାନଙ୍କ ଭିତରେ କେବେହେଲେ କଳି କଜିଆ ନଥିଲା । କେହି କେବେ କାନ୍ଦୁ ନଥିଲା । ମୋଟଉପରେ ଆଜିକାଲି ଆମେ ଯାହାକୁ ଦୁଃଖ, ରୋଗ, ଶୋକ, ବିପଦ ଓ ମରଣ ଆଦି କହୁଛୁ, ସେ କାଳରେ ସେ ସବୁ ଶୁଣା ନଥିଲା । ଏବେ କେଉଁଠି ଜଣେ ହେଲେ ମଣିଷ ଅଛି, ଯାହାର କି କିଛି ଦୁଃଖ ନାହିଁ ?

ସେ କାଳରେ ମଣିଷମାନଙ୍କର ଆନନ୍ଦର ସୀମା ନଥିଲା । କିଛି କଠିନ କାମ କରିବା ଦରକାର ନଥିଲା । ପିଲାମାନେ ହସି ଖେଳି ଦିନ କଟାଇ ଦେଉଥିଲେ ।

ଏବେ ଏତେ ଦୁଃଖ କାହୁଁ ଆସିଲା, ଲୋକେ ଏତେ କଷ୍ଟ ପାଇଲେ କାହିଁକି—ସେ କଥା ଶୁଣ ।

ଏପିମିଥସ ବୋଲି ଗୋଟିଏ ପୁଅ ଥିଲା । ସେ ଅନ୍ୟ ପୁଅ ଝିଅଙ୍କ ସଙ୍ଗେ ଖେଳି ବୁଲି ଦିନ କାଟୁଥିଲା । ସେ ଗୋଟିଏ କୁଡ଼ିଆରେ ରହୁଥାଏ । ଦିନେ ପାଣ୍ଡୋରା ବୋଲି ଗୋଟିଏ ଝିଅ ଆସି କହିଲା, "ଏପିମିଥସ, ମୁଁ ତମ ଘରେ ରହିବି । ଦୁହେଁଯାକ ସାଙ୍ଗ ହୋଇ ଖେଳିବା, ବୁଲିବା ।"

ଏପିମିଥସ ମନା କରିବ କାହିଁକି ? ଦୁହେଁଯାକ ଏକାଠି ରହିଲେ । ହସ ଖେଳରେ ଦିନଗୁଡ଼ାକ ପାଣିପରି ବୋହି ଯାଉଥାଏ । ଦିନେ ପାଣ୍ଡୋରା ଦେଖିଲା, କୁଡ଼ିଆ ଭିତରେ ଗୋଟାଏ ବଡ଼ ବାକ୍ସ ରହିଛି । ପାଣ୍ଡୋରା ପଚାରିଲା, "ଏପିମିଥସ, ଏ ବାକ୍ସରେ କଅଣ ଅଛି ? ଏହାକୁ କିଏ ଆଣି ରଖିଲା ?" ମାତ୍ର ଏପିମିଥସ କିଛି କହିଲା ନାହିଁ ।

ପାଣ୍ଡୋରା ଅନ୍ୟ ପିଲାଙ୍କ ସାଥିରେ ଖେଳେ, ବୁଲେ ଓ ଗଛରୁ ଫଳ ତୋଳି ଖାଏ । ମାତ୍ର ସେ ଅଦ୍ଭୁତ ବାକ୍ସଟା କଥା ଭୁଲିପାରେ ନାହିଁ । ସେ ଏପିମିଥସକୁ କେତେ ଥର ପଚାରିଲା—ବାକ୍ସ କାହୁଁ ଆସିଲା, ସେଥିରେ କଅଣ ଅଛି । ମାତ୍ର କିଛି ଉତ୍ତର ପାଏ ନାହିଁ ।

କିନ୍ତୁ ପାଣ୍ଡୋରାର ମନ ଥୟ ହୁଏ ନାହିଁ । ଅନେକ ଥର ପଚାରିବାରୁ ଦିନେ ଏପିମିଥସ କହିଲା, "ଜଣେ ସେ ବାକ୍ସଟା ଏଠାରେ ରଖି ମୋତେ ଜଗି ରଖିବାକୁ କହିଯାଇଛି । ତା ଭିତରେ

କଅଣ ଅଛି, ମୁଁ ଜାଣେନ । କଅଣ ଗୁପ୍ତ ଜିନିଷ ହୋଇଥିବ । ତୁ ସେ କଥା ମୋତେ ଆଉ ପଚାରିବୁ ନାହିଁ ।”

ଦିନ ପରେ ଦିନ ଗଡ଼ି ଚାଲିଲା । ପାଣ୍ଡୋରା ଖେଳ ବୁଲୁଥାଏ, ମାତ୍ର ତା ମନଟା ଥାଏ ସେହି ବାକ୍ସରେ । ପୁଣି ଥରେ ସେ ଏପିମିଥସଙ୍କୁ ପଚାରିଲା, “କହ, ସେ ବାକ୍ସ କିଏ ଆଣି ରଖିଲା ? ସେଥିରେ କି ଗୁପ୍ତ ଜିନିଷ ଅଛି ?” ଏପିମିଥସ କେତେ ଚୁପ୍ ହୋଇ ରହିବ ? ଶେଷକୁ ସେ କହିଲା, “ସେ ବାକ୍ସ ଭିତରେ କଅଣ ଅଛି, ମୁଁ ତ ନିଜେ ଜାଣେନ, ତୋତେ କିପରି କହିବି ? ଯିଏ ତାକୁ ଏଠି ରଖି ଯାଇଛି, ସେ ଦେଖିବାକୁ ଗୋଟିଏ ସୁନ୍ଦର ଲୋକ । ତା ମୁହଁରେ ହସ ଲଗି ରହିଥାଏ । ତା ମୁଣ୍ଡରେ ଗୋଟାଏ ଟୋପି । ଆଶ୍ଚର୍ଯ୍ୟର କଥା, ସେ ଟୋପିର ଦୁଇ ପାଖେ ଚଢ଼େଇର ଡେଣା ପରି ଗୋଟାଏ ଗୋଟାଏ ଡେଣା ।”

ପାଣ୍ଡୋରା ପଚାରିଲା, “ସେ ହାତରେ ଗୋଟାଏ ବାଡ଼ି ଧରିଥିଲା କି ?”

ଏପିମିଥସ୍ କହିଲା, “ହଁ, ହଁ—ହାତରେ ସେ ଗୋଟାଏ ବାଡ଼ି ଧରିଥିଲା । ତା ବାଡ଼ିଟା ବି ଅଦ୍ଭୁତ । ଦୁଇଟା ସାପ ଗୁଡ଼େଇ ହେଲା ପରି ଦିଶୁଥାଏ । ମୁଁ ତ ପ୍ରଥମେ ତାକୁ ଦୁଇଟା ଜୀବନ୍ତ ସାପ ବୋଲି ମନେକରିଥିଲି ।”

ପାଣ୍ଡୋରା କହିଲା, “ସେ କିଏ ଏବେ ମୁଁ ଜାଣିଲି । ସେ ହେଉଛନ୍ତି ମର୍କ୍ୟୁରି । କେବଳ ତାଙ୍କର ବାଡ଼ି ଦୁଇଟା ସାପ ଗୁଡ଼େଇ ହେଲା ପରି ହୋଇଥାଏ । ସେଇତ ମୋତେ ଏଠି ଛାଡ଼ି ଦେଇ ଯାଇଛନ୍ତି । ବୋଧହୁଏ, ସେ ଏହି ବାକ୍ସରେ ଆମ ପାଇଁ ଭଲ ଭଲ ପୋଷାକ, ଖେଳନା ପ୍ରଭୃତି ରଖିଛନ୍ତି, ନ ହେଲେ ଭଲ ଖାଇବା ଜିନିଷ ହୋଇଥିବ । ଆ, ଦେଖିବା, ସେଥିରେ କଅଣ ଅଛି ?”

ମାତ୍ର ଏପିମିଥସ ସେଥିରେ ରାଜି ନ ହୋଇ କହିଲା, "ସେଥିରେ ଯାହା ଥାଉ, ଆମର ତାକୁ ଫିଟାଇବା ଅନ୍ୟାୟ ହେବ । ଏଥର ସେ ଆସିଲେ, ତାଙ୍କୁ କହିବା । ସେ ଅନୁମତି ଦେଲେ ଫିଟାଇ ଦେଖିବା । ହୁଏତ ସେ ନିଜେ ବାକ୍ସ ଖୋଲି ଆମକୁ ଖେଳନା ଦେବେ ।" ଏହା କହି ଏପିମିଥସ ଅନ୍ୟ ପିଲାଙ୍କ ସାଥିରେ ଖେଳିବାକୁ ଚାଲିଗଲା ।

ସେ ଯିବା ପରେ ପାଣ୍ଡୋରା କୁଡ଼ିଆ ଭିତରେ ବସି ମନେ ମନେ ଭାବିଲା, "ଏଇଟା ଗୋଟାଏ କମିତି ପିଲା ? ଯେତେ କହିଲେ ଶୁଣୁନାହିଁ । ବାକ୍ସ ଭିତରଟା ଦେଖିଲେ କ୍ଷତି କଅଣ ହୁଅନ୍ତା ?"

ସେ ବାକ୍ସଟିକୁ ଚାହିଁ ରହିଲା । କି ସୁନ୍ଦର ଶିଶୁକାଠରେ ତିଆରି । ଖୁବ୍ ପାଲିସ ହୋଇଛି । ଚାହିଁଲେ ସେଥିରେ ଆପଣା ମୁହଁ ଦିଶୁଛି । ଚାରିପାଖେ କେଡ଼େ ସୁନ୍ଦର ଫୁଲ ଓ ପତ୍ରର ଛବି ଖୋଳା ହୋଇଛି । ଡାଳୁଣୀ ଉପରେ ଗୋଟିଏ ପିଲାର ଛବି । ପାଣ୍ଡୋରା ବାକ୍ସ ପାଖରେ ଛିଡ଼ା ହୋଇ ସେ ଛବିକୁ ଚାହିଁଲା । ତାର ମନେ ହେଲା, ସତେ ଅବା ପିଲାଟି ହସି ହସି ତାକୁ କହୁଛି—ବାକ୍ସଟା ଫିଟାଇ ଦେଖୁନାହୁଁ କାହିଁକି ? ଦେଖିଲେ କଅଣ ଦୋଷ ଲାଗିବ ? ବାକ୍ସ ଭିତରେ କେତେ କଉତୁକିଆ ଜିନିଷ ଅଛି ।

ପାଣ୍ଡୋରା ଯେତିକି ସେ ଛବିକି ଚାହିଁଲା, ତା ମନ ସେତିକି ଅଥୟ ହେଲା । ସେ ବାକ୍ସଟାକୁ ଟେକିବାକୁ ଚେଷ୍ଟା କଲା; ଟେକି ପାରିଲା ନାହିଁ । ତେବେ ଏଥିରେ ନିଶ୍ଚେ ବହୁତ ଖେଳନା ଅଛି ବୋଲି ସେ ଭାବିଲା । ସେ ବାକ୍ସ ଚାରିପାଖ ବୁଲି ଦେଖିଲା ।

ବାକ୍ସରେ ଚାବି ପଡ଼ି ନଥିଲା; ଖାଲି ଗୋଟାଏ ସୁନେଲି ସୂତାରେ ବନ୍ଧା ହୋଇ ଗଣ୍ଠି ପଡ଼ିଛି । ଗଣ୍ଠିଟା ସହଜେ ଫିଟିଲା ଭଳି ମନେ ହେଲା ନାହିଁ । ଖୁବ୍ ନିରେଖି ଦେଖିଲା—ମାତ୍ର ସୂତାର ଅଗ

କ ମୂଳ କିଛି ପାଇଲା ନାହିଁ । ପାଣ୍ଡୋରା ଚଞ୍ଚଳ ହୋଇ ଝରକା ବାଟେ ବାହାରକୁ ଚାହିଁଲା । ପିଲାମାନେ ଆପଣା ଆପଣା ଖେଳରେ ମାତିଛନ୍ତି । ସେମାନଙ୍କର ଆନନ୍ଦ ଧ୍ୱନି ଶୁଣାଯାଉଛି । କଅଁଳିଆ ଖରା ପଡ଼ୁଛି । ସମସ୍ତେ ମଉଜ କରୁଛନ୍ତି; ଖାଲି ପାଣ୍ଡୋରା ଘର ଭିତରେ ଏକୁଟିଆ ରହି ବାକ୍ସ କଥା ଭାବୁଛି । ତା ମନ ଆଉ କାହିଁରେ ନାହିଁ ।

ସେ ବାକ୍ସ ଉପରେ ଥିବା ଛବିଟିକୁ ଚାହିଁ ସୁନେଲି ସୂତାରେ ହାତ ମାରୁଛି । ତାକୁ ଜଣାଗଲା—ପିଲାଟି ଖୁବ୍ ହସୁଛି ।

ଠିକ୍ ଏତିକିବେଳକୁ ପାଣ୍ଡୋରା ଦେଖିଲା, ସୂତାର ଗଣ୍ଠି ଫିଟିଯାଇଛି । ହଠାତ୍ ତା ମନରେ ଗୋଟାଏ ଭୟ ପଶିଗଲା । ଏପିମିଥସ ତାକୁ କଅଣ କହିବ । ସେ ଭାବିବ, ମୁଁ ଜାଣିଶୁଣି ବାକ୍ସ ଫିଟାଇଛି । ସେ ସୂତାରେ ପୁଣି ଗଣ୍ଠି ପକାଇ ଦେବାକୁ ବସିଲା ।

ସେ ନାନାପ୍ରକାର ଚେଷ୍ଟା କଲା; ମାତ୍ର ଆଉ ଗଣ୍ଠି ପଡ଼ିଲା ନାହିଁ । ସେ ଭାବିଲା, "ଆଉ ଟିକିଏ ପରେ ଏପିମିଥସ ଆସିବ । ସେ ଦେଖିବ ଯେ ସୂତା ଗଣ୍ଠି ଫିଟିଛି । ମୁଁ ଯେ ବାକ୍ସ ଭିତର ଦେଖି ନାହିଁ, ଏ କଥା ସେ କଅଣ ସତ ମଣିବ ?" ସେ କଅଣ କରିବ କିଛି ଥୟ କରିପାରିଲା ନାହିଁ । ବାକ୍ସ ଉପରେ ଭରା ଦେଇ ସେ ଛିଡ଼ା ହୋଇ ରହିଲା । ଏଇ ସମୟରେ ତା କାନ ପାଖରେ ଶୁଣାଗଲା, "ପାଣ୍ଡୋରା, ଆମକୁ କାଢ଼ିଦେ । ଆମେ ବାହାରକୁ ଗଲେ ତୁ ଆମ ସାଥିରେ ଖେଳିବୁ । ଖାଲି ଆମକୁ ବାହାର କରିଦେଲେ ହେଲା ।"

ଏହେ କେଉଁଠୁ ଆସୁଛି ? ପାଣ୍ଡୋରା ପ୍ରଥମେ ଚମକି ପଡ଼ିଲା । ପୁଣି ସେହି ନରମ ସ୍ୱର ଶୁଣାଗଲା, "ପାଣ୍ଡୋରା, ଆମକୁ ବାହାର

କରିବେ ।" ପାଣ୍ଡୋରା ଏଥର କାନ ଡେରି ଶୁଣିଲା । ସେ ଜାଣି ପାରିଲା, ଏ ଶବ୍ଦ ସେହି ବାକ୍ସ ଭିତରୁ ବାହାରୁଛି । ସେ ଭାବିଲା, "ତେବେ ମୋର ଭଲ ପିଲା ଏହା ଭିତରେ ଅଛନ୍ତି । ଟିକିଏ ଭିତରକୁ ଚାହିଁ ଦେଖିଲେ ଦୋଷ କଅଣ ?" ସେ ଡାକୁଣୀକୁ ଟେକିବାକୁ ହାତରେ ଧରିଲା ।

ଠିକ୍ ଏତିକିବେଳକୁ ଏପିମିଥିସ ଆସି ଦୁଆରେ ପହଞ୍ଚିଗଲା । ସେ ଯେବେ ପାଟି କରି ପାଣ୍ଡୋରାକୁ ବାକ୍ସ ଫିଟାଇବାକୁ ମନା କରି ଦେଇଥାନ୍ତା, ତେବେ ରକ୍ଷା ମିଳିଥାନ୍ତା; ବାକ୍ସରେ କଅଣ ଅଛି କେହି ଜାଣି ପାରି ନଥାନ୍ତେ । ସେ ଦୁଆରମୁହଁରୁ ଦେଖିଲା, ପାଣ୍ଡୋରା ବାକ୍ସ ଖୋଲୁଛି; ମାତ୍ର ସେ ତାକୁ ମନା କଲା ନାହିଁ । ଅସଲ କଥା ହେଉଛି, ବାକ୍ସ ଭିତରେ କଅଣ ଅଛି ଜାଣିବାକୁ ତାର ମଧ୍ୟ ମନ ଉଚ୍ଛନ୍ନ ହେଉଥାଏ । ସେ ଚୁପ୍ କରି ଦୁଆରମୁହଁରେ ଠିଆ ହୋଇ ରହିଲା ।

ପାଣ୍ଡୋରା ଡାକୁଣୀଟା ଟେକିଲା ମାତ୍ରେ କୁଡ଼ିଆ ଭିତର ଅନ୍ଧାର ହୋଇଗଲା । ଆକାଶରୁ ଘଡ଼ଘଡ଼ିର ଶବ୍ଦ ଶୁଣାଗଲା । ସେ ବାକ୍ସ ଭିତରକୁ ଚାହିଁଲାକ୍ଷଣି ସେଥିରୁ ବିରୁଡ଼ିପରି ଗୁଡ଼ାଏ ମାଛି ବାହାରି ତା ଦେହ ମୁହଁ ବିନ୍ଧି ଦେଇ ଘରଯାକ ଉଡ଼ିଲେ । ବିଚାରୀକୁ ଏତେ କଷ୍ଟ ହେଲା ଯେ ସେ ବଡ଼ ପାଟି କରି କାନ୍ଦି ଉଠିଲା ।

ଏପିମିଥିସ ଦୁଆରମୁହଁରେ ଠିଆ ହୋଇଥିଲା । ସେ ପୋକରୁ ଗୁଡ଼ାଏ ଉଡ଼ିଆସି ତାକୁ ମଧ୍ୟ ନାହୁଡ଼ି ମାରିବାକୁ ଲାଗିଲେ । ସେ ବିକଳ ହୋଇ ପାଟିକଲା—"ଓଃ ମରିଗଲି । ପାଣ୍ଡୋରା, ପାଣ୍ଡୋରା, ତୁ କଅଣ କଲୁ ? କାହିଁକି ସେ ବାକ୍ସ ଫିଟାଇଲୁ ?"

ବିରୁଡ଼ି ଭଳି ଗ୍ରେଟ ଜୀବ ହେଲେ କଅଣ ହେବ— ସେମାନଙ୍କର ଗଣଗଣ ଶବ୍ଦରେ କାନ ଅତଡ଼ା ପଡ଼ିଲା । ସେମାନଙ୍କ

ନାହୁଡ଼ର ବକ୍ଷରେ ପିଲା ଦୁଇଟା ମଲାପରି ହୋଇଗଲେ । ସେମାନେ ଛଟପଟ ହୋଇ ଡେଇଁଲେ ।

ଏ ବାକ୍ସ ଭିତରେ ସବୁ ମନ୍ଦ ଚିନ୍ତା, ଦୁଃଖ, ରୋଗ, ମୃତ୍ୟୁ ବନ୍ଦ ହୋଇଥିଲେ । ତେଣୁ ପୃଥିବୀର ପିଲାମାନେ ଏସବୁ କଅଣ ଜାଣି ନଥିଲେ । ଏବେ ପାଣ୍ଡୋରା ବାକ୍ସ ଫିଟାଇ ଦେବାରୁ ସେମାନେ ବାହାରି ପଡ଼ି ପୃଥିବୀଯାକ ବ୍ୟାପିଗଲେ । ସେମାନେ ଯାହାକୁ ଦେଖିଲେ ତାକୁ ନାହୁଡ଼ରେ ବିନ୍ଧି ଦେଲେ । ଏଣିକି ପିଲାଙ୍କ ମୁହଁରେ ହସ ଦେଖାଗଲା ନାହିଁ । କାଳକଯାକ ପିଲା ନ ରହି ସେମାନେ ବୁଢ଼ା ବୁଢ଼ୀ ହେଲେ । ସେମାନଙ୍କ ଭିତରେ ରୋଗ ଦେଖାଗଲା । ଗଛରେ ଆଉ ସବୁ କାଳେ ଫୁଲ ଫଳ ରହିଲା ନାହିଁ । ଅଳ୍ପଦିନ ପରେ ସେ ସବୁ ଶୁଖି ଝଡ଼ି ପଡ଼ିଲା । ପିଲାଙ୍କର ସୁଖର ଦିନ ସରିଗଲା ।

ନାନା କଷ୍ଟ ସହି ସହି ପାଣ୍ଡୋରା ଓ ଏପିମିଥସ କୁଡ଼ିଆ ଭିତରେ ରହିଥାନ୍ତି । ଏଥି ପୂର୍ବରୁ କଷ୍ଟ କଣ ସେମାନେ ଜାଣି ନଥିଲେ । ନିଜ ଦୋଷରୁ ସେମାନଙ୍କର ଏପରି ଦଶା ହୋଇଛି; ଏହା ଭାବିଲାକ୍ଷଣି ସେମାନଙ୍କୁ କାନ୍ଦ ମାଡ଼େ । ଏବେ ଦୁହିଁଙ୍କ ଭିତରେ ଆଗଭଳି ମନ ମିଳେ ନାହିଁ, କଳି କଜିଆ ଲାଗେ । ଏହିପରି କେତେ ଦିନ ଗଲା ।

ଦିନେ ପାଣ୍ଡୋରା ବାକ୍ସକୁ ଅଉଜି ମେଜିଆ ଉପରେ ବସିଥିଲା । କୁଡ଼ିଆର ଗୋଟିଏ କଣରେ ପାଣ୍ଡୋରା ଆଡ଼କୁ ପିଠି କରି ଏପିମିଥସ୍ ବସିଥାଏ । କେହି କାହାକୁ କିଛି କହୁ ନଥାନ୍ତି । ଏପିମିଥସ୍ ଭାବୁଥାଏ, ଖାଲି ପାଣ୍ଡୋରାର ଦୋଷ କଅଣ ? ସେ ବି ଦୋଷୀ ।

ଏଇ ସମୟରେ ବାକ୍ସ ଭିତରୁ ଠକ୍ ଠକ୍ ଶବ୍ଦ ହେଲା । ପାଣ୍ଡୋରା ଆଶ୍ଚର୍ଯ୍ୟ ହୋଇ ଠିଆ ହେଲା । ପୁଣି ଶୁଣାଗଲା ଠକ୍ ଠକ୍ ଶବ୍ଦ । ଶବ୍ଦଟା ଯେ ବାକ୍ସ ଭିତରୁ ଆସୁଛି, ସନ୍ଦେହ ନାହିଁ । ସେ ଭାବିଲା, ବାକ୍ସ ଭିତରେ ଏତେ ଦୁଷ୍ଟ ଜୀବ ଥିଲେ । ସମସ୍ତେ ବାହାରି ଆସିଛନ୍ତି । ହୁଏତ ସେଥିରୁ ଗୋଟାଏ ରହିଯାଇଛି । ପାଣ୍ଡୋରା ପଚାରିଲା, "ତୁ କିଏ ?"

କଅଁଳିଆ ସ୍ୱରରେ ବାକ୍ସ ଭିତରୁ କିଏ କହିଲା, 'ପାଣ୍ଡୋରା, ଢାଙ୍କୁଣୀଟା ଟେକିଦେଲେ ଦେଖିବ ମୁଁ କିଏ ?"

ପାଣ୍ଡୋରା ଆହୁରି ଦୁଃଖର ଆଶଙ୍କା କରି କାନ୍ଦି କାନ୍ଦି କହିଲା, "ନା, ନା, ତା ହବନି । ଥରେ ଢାଙ୍କୁଣୀ ଫିଟାଇ ଯେଉଁ ଫଳ ପାଇଛୁ, ସେଇ ଯଥେଷ୍ଟ । ଆଉ ଫିଟାଇବା ଦରକାର ନାହିଁ ।"

ପୁଣି ସେହି କରୁଣ ସ୍ୱର ଶୁଣାଗଲା, "ପାଣ୍ଡୋରା, ମୁଁ ସେମାନଙ୍କ ଭଳି ନୁହେଁ । ମୋର ନାହୁଡ଼ ନାହିଁ କି ମୁଁ କାହାର ଅନିଷ୍ଟ କରେ ନାହିଁ । ମୋତେ ବାହାର କରିଦିଅ ଦେଖିବ, ତୁମର କିଛି କ୍ଷତି ହେବ ନାହିଁ ବରଂ ଲାଭ ହେବ ।"

ପାଣ୍ଡୋରାର ମନ ନରମ ହୋଇ ଆସିଥିଲା । ସେ ଏପିମିଥସକୁ ପଚାରିଲା, "ଆଉ ଥରେ ବାକ୍ସ ଫିଟେଇବ ?"

ଏପିମିଥସ କହିଲା, "ଏତେ ଦୁଷ୍ଟ ଜୀବ ତ ବାହାରି ସାରିଲେଣି—ଆଉ ଗୋଟାଏ ଆସିଲେ କ୍ଷତି କଅଣ ?"

ପୁଣି ବାକ୍ସ ଭିତରୁ ଶବ୍ଦ ଆସିଲା, "ପାଣ୍ଡୋରା, ଏତିକି ବୁଝିପାରୁନାହିଁ । ଏପିମିଥସର ମନ ମତେ ଦେଖିବାକୁ ଆକୁଳ ହେଲାଣି । ମତେ ବାକ୍ସରୁ ବାହାର କରିଦିଅ । ଦେଖିବ, ମୁଁ ତୁମର ଦୁଃଖରୁ କେତେ ହରିନେବ ।"

ପାଣ୍ଡୋରା ବାକ୍ସର ଢାକୁଣୀ ଟେକିବାକୁ ବସିଲା । ଏପିମିଥସ୍ ତାକୁ ସାହାଯ୍ୟ କଲା । ଦୁହେଁ ମିଶି ବାକ୍ସଟିକୁ ଖୋଲି ଦେଲେ ।

ବାକ୍ସ ଭିତରୁ ବାହାରିଲା, ପରୀ ଭଳି ଟିକି ଜୀବଟିଏ । ତା ଦେହରୁ ଆଲୁଅ ବାହାରୁଛି । ସେ ଘର ଭିତରେ ଉଡ଼ିଲା ବେଳକୁ ଚାରିଆଡ଼ ଆଲୁଅ ହୋଇ ଯାଉଥାଏ । ସେ ଉଡ଼ିଆସି ପାଣ୍ଡୋରାକୁ ଚୁମ୍ବନ ଦେଲା । ପାଣ୍ଡୋରାର ଦୁଃଖ କଷ୍ଟ କୁଆଡ଼େ ଉଭେଇଗଲା । ତାପରେ ସେ ଏପିମିଥସକୁ ସେହିପରି ଚୁମ୍ବନ ଦେଲା । ସେ ମଧ୍ୟ ନିଜର ଦୁଃଖ ଯନ୍ତ୍ରଣା ଭୁଲିଗଲା ।

ଏବେ ଦୁହିଁଙ୍କର ମନରେ ଆନନ୍ଦ । ଏ ଟିକି ପରୀଟିକୁ ବାହାର କରି ନଥିଲେ ସେମାନଙ୍କର କଷ୍ଟ କିଏ ହରିଥାନ୍ତା ? ପାଣ୍ଡୋରା ପଚାରିଲା, "ତୁମେ କିଏ ?" ଉତ୍ତର ମିଳିଲା—ମୋ ନାଆଁଟି ହେଉଛି 'ଆଶା' । ମର୍କ୍ୟୁରୀ ବାକ୍ସ ଭିତରେ ସେ ଦୁଷ୍ଟ ଜୀବମାନଙ୍କ ସଙ୍ଗେ ମୋତେ ମଧ୍ୟ ରଖିଥିଲେ । ସେମାନଙ୍କର କାମ ହେଲା—ମଣିଷ ଜାତିକୁ କଷ୍ଟ ଦେବା । ମନୁଷ୍ୟ ଜାତି ଯେପରି ସେ କଷ୍ଟ ସହିପାରିବ, ସେଥିପାଇଁ ମୁଁ ସବୁବେଳେ ଜାଗ୍ରତ ରହିଥାଏ ।

ପାଣ୍ଡୋରା ଦେଖିଲା ଯେ ପରୀର ଡେଣାରେ ଇନ୍ଦ୍ରଧନୁର ସାତୋଟିଯାକ ରଙ୍ଗ ଅଛି । ସେ ଏଥିର କାରଣ ପଚାରିବାରୁ ପରୀ କହିଲା, "ହଁ, ସଂସାରଟାରେ ଭଲ ଆଉ ମନ୍ଦ ମିଶି ରହିଛି । ହସ ପାଖେ କାନ୍ଦ, ସୁଖ ପାଖେ ଦୁଃଖ ଲାଗିଥିବ । ସେଥିପାଇଁ ମୋ ଡେଣାରେ କେତେକ ଉଜ୍ଜ୍ୱଳ ରଙ୍ଗ ସାଥିରେ ମଳିନ ରଙ୍ଗ ବି ରହିଛି ।"

"ତୁମେ କଅଣ ଆମ ସାଥିରେ କାଳ କାଳକୁ ରହିଥିବ ?" —ପାଣ୍ଡୋରା ପଚାରିଲା ।

ପକ୍ଷୀ ଉତ୍ତର କଲା, "ଯେତେ ଦିନ ଯାଏ ତୁମେ ମୋର ସାହାଯ୍ୟ ଲୋଡ଼ିବ, ସେତେ ଦିନ ଯାଏ ଅବଶ୍ୟ ରହିବି । ମୁଁ ତୁମ ପାଖେ ପାଖେ ଥିବି । ବେଳେବେଳେ ତୁମେ ମତେ ଦେଖିପାରିବ ନାହିଁ । ପୁଣି ବେଳେବେଳେ ତୁମେ ମତେ ନ ଖୋଜୁଣୁ ମୁଁ ଆସି ଦେଖାଦେବି ।"

ପକ୍ଷୀର କଥା ସତ ହେଲା । ଦୁଷ୍ଟ ଜୀବଗୁଡ଼ାକ ପୃଥିବୀସାରା ବୁଲି ଲୋକଙ୍କୁ ଦୁଃଖ କଷ୍ଟ ଦେଲେ; କିନ୍ତୁ ଆଶା ପାଖେ ପାଖେ ରହି ସେ ସବୁ କଷ୍ଟ ସହିବାକୁ ଲୋକଙ୍କୁ ବଳ ଦେଲା ।

ଏବେ ବି ଦୁନିଆରେ ସେଇ କଥା ଚାଲିଛି । ଯେତେ କଷ୍ଟ ହେଉ ପଛକେ ଆଶା ତାର ଦୁଃଖର ଭାରକୁ ଊଣା କରି ଦେଉଛି । ଦୁଃଖମୟ ସଂସାରରେ ଆଶାହିଁ ମନୁଷ୍ୟର ଆଶ୍ରୟ ସ୍ଥଳ ହୋଇ ରହିଛି । ଆଶା ଆମକୁ ନୂଆ ଜୀବନ ଦେଉଛି ।



# ପକ୍ଷିରାଜ ଘୋଡ଼ା ପେଗାସସ୍

ବହୁ ଦିନ ପୂର୍ବର କଥା । ଗ୍ରୀସ୍ ଦେଶରେ ଜଣେ ଯୁବକ ଥିଲେ । ସେ ଦିନେ ସନ୍ଧ୍ୟାବେଳେ ଆସି ଗୋଟିଏ ଝରଣା କୂଳେ ବସିଲେ । ଝରଣାଟି କୁଳୁ କୁଳୁ ଶବ୍ଦ କରି ପାହାଡ଼ରୁ ବୋହି ଆସୁଥିଲା । ତାର ପାଣି ଅତି ନିର୍ମଳ, ଅତି ଥଣ୍ଡା । ଯୁବକ ସେହି ଝରଣାରୁ କିଛି ପାଣି ଆଣି ପିଇଲେ ।

ଏହି ସମୟରେ ଜଣେ ସୁନ୍ଦରୀ ସ୍ତ୍ରୀଲୋକ ମାଠିଆ ଧରି ଝରଣାରୁ ପାଣି ନେବା ପାଇଁ ଆସିଲେ । ଯୁବକ ତାଙ୍କୁ ଏହି ଝରଣାର ନାମ ପଚାରିଲେ । ଯୁବତୀ ଉତ୍ତର କଲେ, "ଏହାର ନାମ ହେଉଛି ପିରେନ । ଲୋକେ କହନ୍ତି, ପିରେନ ବୋଲି ଗୋଟିଏ ମାଆର ଆଖିର ଲୁହ ଝରଣା ହୋଇ ବହିଯାଉଛି । ତାର ପୁଅଟିଏ ଥିଲା । ସେ ତାକୁ ନିଜ ଜୀବନଠାରୁ ବେଶି ଭଲ ପାଉଥିଲା । ପିଲାଟି ମରିଯିବାରୁ ସେ କାନ୍ଦୁଛି । ତାର କାନ୍ଦଣା ଆଜିଯାଏ ବନ୍ଦ ହୋଇନାହିଁ । ତାରି ଲୁହ ହେଉଛି ଏଇ ଝରଣାର ପାଣି ।" ଯୁବକ କହିଲା, "ଓଃ, ତେବେ ଏଇ ହେଉଛି ପିରେନ ନଈ ! ମୁଁ ଏହାକୁ ଖୋଜି ଖୋଜି ଏଠାରେ ପହଞ୍ଚିଛି ।"

ଜଣେ ଚାଷୀ ତା ବଳଦଙ୍କୁ ପାଣି ପିଆଇବା ପାଇଁ ସେଠାକୁ ଆସିଲା । ସେ ଯୁବକଙ୍କ ହାତରେ ଘୋଡ଼ାର ଲଗାମ୍ ଦେଖି ପଚାରିଲା,

"ତୁମେ ହାତରେ ଗୋଟାଏ ଲଗାମ ଧରି ବୁଲୁଛ କାହିଁକି ? ତୁମ ଘୋଡ଼ାଟା କଅଣ ପଳାଇଗଲା ?"

ଏହି ଯୁବକଙ୍କର ନାମ ବେଲରଫୋନ୍ । ବୃଦ୍ଧର ପ୍ରଶ୍ନ ଶୁଣି ସେ କହିଲେ, "ନା, ନା, ମୋର ଘୋଡ଼ା ହଜି ନାହିଁ । ତୁମେ ପକ୍ଷି-ରାଜ ଘୋଡ଼ା ପେଗାସସ୍‌ର ନାଆଁ ଶୁଣିଥିବ । ତାର ଯୋଡ଼ାଏ ଡେଣା ଅଛି । ସେ ଉଡ଼ିପାରେ । ସେ ଏଇ ଝରଣାକୁ ପାଣି ପିଇବାକୁ ଆସେ ବୋଲି ଶୁଣି ମୁଁ ଏଠାକୁ ଆସିଛି ।"

ବୃଦ୍ଧ କହିଲା, "ତେବେ ତୁମେ ଆସିଛ ପକ୍ଷିରାଜ ଘୋଡ଼ାକୁ ଧରି ନେବା ପାଇଁ ? ତୁମେ ବି ସେଇ ପକ୍ଷିରାଜ ଘୋଡ଼ା କଥା ସତ ମଣୁଛ ? ହେଲା, ପକ୍ଷିରାଜ ଘୋଡ଼ାକୁ ଧରିଲ; ତାକୁ ନେଇ କଅଣ କରିବ ? କେ କଅଣ ହଳ କରିବ, ନା ଗାଡ଼ି ଟାଣିବ ?'

ବେଲରଫୋନ୍ ଦେଖିଲେ ବୁଢ଼ା ବୃଦ୍ଧର ମୁହଁ ହସହସ । ସେ ପଚାରିଲେ, "ଅଜା, ତୁମକୁ ଷାଠିଏ କି ସତୁରି ବର୍ଷ ହେବଣି । ତମେ ପିଲାଦିନେ କେବେ ସେ ପେଗାସସ୍‌କୁ ଦେଖିଛ ?"

ବୁଢ଼ା ଉତ୍ତର କଲା, "ମୋର ବୟସ କେତେ ହେଲାଣି ମୁଁ କହି ପାରିବି ନାହିଁ । ଏବେ କେତେ ବର୍ଷ ହେଲା ମୋର କିଛି ମନେ ରହୁନାହିଁ । ଗଲାଦିନ କଥା ସବୁ ଭୁଲିଯାଉଛି । ଆଗେ ପିଲାଦିନେ ମୁଁ ପକ୍ଷିରାଜ ଘୋଡ଼ା କଥା ସତ ମଣୁଥିଲି । ମୁଁ ଏବେ ସେ ସବୁ କଥା ଭାବେ ନାହିଁ ।"

ସେତେବେଳକୁ ଯୁବତୀଟି ମାଠିଆରେ ପାଣି ପୂରାଇ ଛିଡ଼ା ହୋଇଥିଲେ । ବେଲରଫୋନ୍ ତାଙ୍କୁ ପଚାରିଲେ, "ବୁଢ଼ାଙ୍କର

ଆଖିକୁ ଭଲ ଦିଶୁ ନଥିବ । ତୁମେ କେବେ ସେ ପକ୍ଷିରାଜ ଘୋଡ଼ାକୁ ନିଜ ଆଖିରେ ଦେଖିଛ ?"

ଯୁବକଟି ଟିକିଏ ହସି ଦେଇ କହିଲେ, "ହିଁ, ଥରେ ଦେଖିଥିଲି ପରି ମନେହେଉଛି । ତେବେ ସେ ପେଗାସସ୍ କି ଗୋଟାଏ ବଡ଼ ଚଢ଼େଇ ଠିକ୍ କରି କହି ପାରିବି ନାହିଁ । ଆକାଶରେ ଅନେକ ଉଚ୍ଚରେ ଉଡ଼ୁଥିଲା । ଆଉ ଥରେ ଏଇ ଝରଣା କୂଳରେ ମୁଁ ତାର ହେଁବାଇବା ଶୁଣିଛି; ହେଲେ ତାକୁ ଦେଖି ନାହିଁ ।"

ଗୋଟିଏ ଛୋଟ ପିଲା ପାଖରେ ଛିଡ଼ା ହୋଇ ଏମାନଙ୍କର କଥାବାର୍ତ୍ତା ଶୁଣୁଥିଲା । ବେଲାରଫୋନ୍ ତାକୁ ପଚାରିଲେ, "ତୁମେ କଅଣ କେବେ ପକ୍ଷିରାଜ ଘୋଡ଼ା ଦେଖିଛ ? ସେ କେଉଁଠି ପାଣି ପିଇବା ପାଇଁ ଏଇ ଝରଣା କୂଳକୁ ଆସେ ?"

ପିଲାଟି କହିଉଠିଲା, "ହିଁ, ମୁଁ କେତେ ଥର ଦେଖିଛି । କାଲି ତ ପେଗାସସ୍ ଏଠିକି ଆସିଥିଲା । ମୁଁ ତାକୁ ଦେଖିଥିଲି ।"

ବେଲାରଫୋନ୍ ଏଇ ପିଲାଟିଠାରୁ ଖବର ଜାଣିବା ପାଇଁ ତାକୁ ଏକୁଟିଆ ଡାକି ନେଇ ଘାସ ଉପରେ ବସିଲେ । ସେ ପଚାରିଲେ, "ତୁମେ ନିଜ ଆଖିରେ ତାକୁ ଦେଖିଛ ବୋଲି କହୁଛ । ସେ ଦେଖିବାକୁ କିପରି, ସେ ଏଠାକୁ ଆସି କଅଣ କରେ ? ଯାହା ଜାଣିଛ, ସବୁ କହ ?"

ପିଲାଟି କହିଗଲା, "ମୁଁ ପ୍ରାୟ ପ୍ରତିଦିନ ଏଇ ଝରଣା ପାଖକୁ ଆସି ସେଥିରେ କାଗଜ ଡଙ୍ଗା ଭସାଏ । ଡଙ୍ଗା ଗୁଡ଼ିକ ଭାସିଲାବେଳକୁ ମୁଁ ପାଣିକୁ ଚାହେଁ । ସେଥିରେ ପକ୍ଷିରାଜ ଘୋଡ଼ାର ଛାଇ ଦିଶେ । ସେ ଆକାଶରେ ଚଢ଼େଇ ପରି ଉଡ଼ୁଥାଏ । ସେତେବେଳେ ମୋର ମନେହୁଏ, ସେ ମୋତେ ତା ପିଠିରେ ବସାଇ ନିଅନ୍ତା କି ମୁଁ

କେତେ ଦେଶ ଦେଖନ୍ତି । ମୁଁ ଉପରକୁ ଚାହିଁଦେଲାକ୍ଷଣି ସେ ଉଡ଼ି କୁଆଡ଼େ ପଳାଏ; ଆଉ ଦରଶ ନାହିଁ ।”

ବେଲରଫୋନ୍ ପିଲାଟିର କଥାରେ ବିଶ୍ୱାସ କଲେ । ସେ ଝରଣାରେ ପେଗାସସ୍‌ର ଛାଇ ଦେଖିଛନ୍ତି । ସ୍ତ୍ରୀଲୋକଟିର କଥାକୁ ମଧ୍ୟ ସେ ସତ ବୋଲି ମନେ କଲେ । ବୃଦ୍ଧଟି ତାର ରାବ ଶୁଣିଛନ୍ତି । କେତେବେ ପେଗାସସ୍ ବିଷୟରେ ଯାହା ସବୁ ଶୁଣାଯାଏ, ସେ ସବୁ ମିଛ ହୋଇ ନ ପାରେ ।

ବେଲରଫୋନ୍ ଅନେକ ଦିନଯାଏ ସେଇ ଝରଣା କୂଳେ ଜଗି ରହିଲେ । ହାତରେ ଲଗାମ ଧରି ଆକାଶକୁ ଚାହିଁଥାନ୍ତି । ଲଗାମରେ ମଣିମୁକ୍ତା ଖଞ୍ଜା ହୋଇ ସୁନ୍ଦର ଦିଶୁଥାଏ । କଳଆଟା ସୁନାର । କେତେବେଳେ ପେଗାସସ୍‌ର ଦେଖା ମିଳିଲେ, ଲଗାମ ଲଗାଇ ତା ଉପରେ ବସିଯିବେ ।

ଏଇପରି କେତେ ଦିନ ଗଲା । ଆଖପାଖର ଲୋକେ ବେଲରଫୋନ୍‌ଙ୍କର ଏପରି ଚାହିଁ ରହିବା ଦେଖି ଥଟ୍ଟା କରନ୍ତି । କେହି କେହି କହନ୍ତି—“ଘୋଡ଼ା କିଣିବ ? ଆସ, ମୁଁ ଗୋଟାଏ ଘୋଡ଼ା ବିକିବି ।” ଆଉ କିଏ କହେ—“ଖାଲି ଲଗାମ ଧରି ବୁଲିଲେ କଅଣ ହେବ ? ମୋର ଘୋଡ଼ା ପାଇଁ ଗୋଟାଏ ଲଗାମ ଦରକାର । ବିକିବ ତ ମୁଁ ତମ ଲଗାମଟା କିଣିନେବି । ଭଲ ଦାମ୍ ପାଇବ ।” ମାତ୍ର ବେଲରଫୋନ୍ ଲୋକଙ୍କ କଥା ଶୁଣି ନ ଶୁଣିଲା ପରି ରହନ୍ତି । ସେ ସବୁବେଳେ ଝରଣା କୂଳରେ ବସି ଆକାଶକୁ ଚାହିଁଥାନ୍ତି ।

ବେଲରଫୋନ୍‌ଙ୍କର ପ୍ରତିଜ୍ଞା, ସେ ପକ୍ଷିରାଜ ଘୋଡ଼ା ପେଗାସସ୍‌କୁ ନଦେଖିଲେ ଫେରିବେ ନାହିଁ । ଏଥିର ଏକ କାରଣ ଥିଲା । ସେ ଶୁଣିଥିଲେ ସେପାଖ ରାଇଜରେ ଗୋଟାଏ ଅସୁର ଅଛି ।

ସେ ସେଠାରେ ଲୋକଙ୍କ ଉପରେ ଘୋର ଅତ୍ୟାଚାର କରୁଛି । ତାକୁ କେହି ମାରିପାରୁ ନାହାନ୍ତି । ବେଲାରଫୋନ୍ ତାକୁ ମାରିବାକୁ ମନ କରିଥିଲେ । ତାକୁ ମାରିବାକୁ ହେଲେ ଏଇ ପକ୍ଷିରାଜ ଘୋଡ଼ାର ସାହାଯ୍ୟ ଦରକାର । ତା ବିନା ଅସୁରର ପାଖ ପଶିହେବ ନାହିଁ । ଏଇଥିପାଇଁ ବେଲାରଫୋନ୍ ପକ୍ଷିରାଜ ଘୋଡ଼ାକୁ ଖୋଜି ବୁଲୁଥିଲେ ।

ସେ କାଳରେ କେତେ ଯୁବକ ଦୁଷ୍ଟ ରାକ୍ଷସ ବା ସେହିପରି ହିଂସ୍ର ଜନ୍ତୁଙ୍କୁ ମାରି ଲୋକଙ୍କର ଉପକାର କରିବାକୁ ବଡ଼ କାମ ବୋଲି ମନେ କରୁଥିଲେ । ଏଭଳି ଯୁବକଙ୍କର ପ୍ରଶଂସା ଚାରିଆଡ଼େ ଶୁଣାଯାଉଥିଲା ।

ବେଲାରଫୋନ୍ ଶୁଣିବାକୁ ପାଇଲେ, ଲିସିଆ ରାଜ୍ୟରେ ଗୋଟାଏ ଦୁଷ୍ଟ ଅସୁର ଅଛି । ଲିସିଆ ରାଜ୍ୟ ତାଙ୍କ ରାଜ୍ୟକୁ ଲାଗିଛି । ଏଇ ଅସୁର ଯୋଗେ ରାଜ୍ୟ ଛାରଖାର ହୋଇ ଯାଉଥିଲା । ଲୋକେ ତା ଭୟରେ ଥରହର ହେଉଥିଲେ । ବେଲାରଫୋନ୍‌ଙ୍କ ସାହସ ଓ ବଳ କଥା ଶୁଣିପାରି ଲିସିଆର ରାଜା ତାଙ୍କୁ କହିଲେ, "ଏ ଅସୁରକୁ ମାରି ମୋର ପ୍ରଜାଙ୍କୁ ରକ୍ଷା କର ।" ଏଇଥିପାଇଁ ବେଲାରଫୋନ୍ ପେଗାସସ୍‌କୁ ପାଇବା ସକାଶେ ଉଦ୍ୟମ କରୁଥିଲେ ।

ଏଇ ଅସୁରଟିର ନାମ ସାଇମେରା । ତା'ଭଳି ହିଂସ୍ର ଜନ୍ତୁ କେଉଁଠି ନ ଥିବେ । ତାର ବିକଟାଳ ରୂପ ଦେଖିଲେ ଲୋକେ ଡରରେ ଅଚେତା ହୋଇଯିବେ । ସେ ଏଡ଼େ ବେଗରେ ଯାଇପାରେ ଯେ କେହି ତା ସାଥିରେ ଦୌଡ଼ି ପାରିବେ ନାହିଁ । ତା ଦେହ ଲୁହାରୁ ବଳି ଟାଣ । ସେଥିରେ କୌଣସି ହତିଆର ଭେଦ ନପାରେ । ତାର ଲାଞ୍ଜଟି ଗୋଟିଏ ଅଜଗର ସାପ ଭଳି । କାହାର ସିନା ଗୋଟାଏ ମୁଣ୍ଡ, ଏ ଅସୁରର ତିନୋଟା ମୁଣ୍ଡ । ଗୋଟିଏ ହେଉଛି ସିଂହମୁଣ୍ଡ, ଗୋଟିଏ ଛେଳିମୁଣ୍ଡ ଓ ଆଉ ଗୋଟିଏ ହେଉଛି ବିଷାକ୍ତ ସାପର

ମୁଣ୍ଡ । ସବୁ ମୁଣ୍ଡରୁ ସବୁବେଳେ ଦାଉଦାଉ ନିଆଁ ବାହାରୁଥାଏ । ସାଇମେରା ସିଂହ ପରି ବେଗରେ ଦଉଡ଼ି ପାରୁଥିଲା, ଛେଳି ପରି ଉଚ୍ଚକୁ ଉଠିପାରୁଥିଲା, ପୁଣି ସାପ ପରି ଘୂଷୁରି ପାରୁଥିଲା । ତେଣୁ ତାକୁ ମାରିବାକୁ କେହି ସାହସ କରି ପାରୁ ନଥିଲେ ।

ତା ନିଃଶ୍ୱାସ ନିଆଁ ହୁଳା ପରି । ସେ ନିଃଶ୍ୱାସରେ ଗୋଟାଏ ଗୋଟାଏ ଗାଁ ପୋଡ଼ିଯାଏ । କେତେ ଦଣ ସେଥିରେ ପୋଡ଼ି ପାଉଁଶ ହୋଇଯାଏ । ସେ ଜୀଅନ୍ତା ମଣିଷ, ଗୋରୁଗାଈ ଗିଳି ଖାଇଦିଏ । ତାର ପେଟ ଭିତରଟା ଅଗ୍ନିଶାଳ ଚୁଲି ପରି । ସେ ଯାହା ଗିଳେ, ତାହା ତାର ପେଟରେ ସିଧି ହଜମ ହୋଇଯାଏ । ଏପରି ଅସୁର ପାଖକୁ ଯିବା ପାଇଁ କାହାର ସାହସ ହେବ ?

ବେଲରଫୋନ୍ ଭରି ଗୁଳାଖ । ସାଇମେରାକୁ ମାରିବାକୁ ଗଲେ ଆଗ ଗୋଟିଏ ଘୋଡ଼ା ଦରକାର । ତେବେ ଯେମିତି ଇଚ୍ଛା ସେମିତି ଘୋଡ଼ା ହେଲେ ଚଳିବ ନାହିଁ । ସେ ଖୁବ୍ ବେଗରେ ଦୌଡ଼ି ପାରିଲେ ହେବ । ପକ୍ଷିରାଜ ପେଗାସସ୍ହିଁ ଏ କାମ ପାଇଁ ଯୋଗ୍ୟ । ଅନେକେ ଭାବୁଥିଲେ, ପେଗାସସ୍ ବୋଲି କୌଣସି ଘୋଡ଼ା ନାହିଁ । ତା ବିଷୟରେ ଯେତେ କଥା ଶୁଣାଯାଏ, ସେ ସବୁ ଖାଲି ଗୁଳାଖଟି ଗପ । କିନ୍ତୁ ବେଲରଫୋନ୍ଙ୍କର ବିଶ୍ୱାସ, ପ୍ରକୃତରେ ପେଗାସସ୍ ଅଛି । ତାକୁ ପାଇପାରିଲେ ସେ ସାଇମେରାକୁ ମାରିପାରିବେ ।

ପେଗାସସ୍କୁ ପାଇବା ପାଇଁ ସେ ଏତେ ବାଟ ଚାଲି ଲିସିଆରୁ ଗ୍ରୀସକୁ ଆସିଥିଲେ । ପୁଣି ସେହି ପକ୍ଷିରାଜ ଘୋଡ଼ାକୁ ଆୟତ୍ତ କରିବା ଲାଗି ସୁନ୍ଦର ଲଗାମଟିଏ ଆଣିଥିଲେ । ଏ ଲଗାମର ଅଦ୍ଭୁତ ଶକ୍ତି ଥିଲା । ଥରେ ପକ୍ଷିରାଜ ଘୋଡ଼ା ଦେହରେ ଲଗାମ ଲାଗିଲେ, ସେ ବଶ ହୋଇଯିବ ଓ କଥା ମାନି ଯୁଆଡ଼େ ନିବାକୁ କହିବ ସେଆଡ଼େ ଯିବ ।

ବେଲରଫୋନ୍ ଝରଣା କୂଳରେ ବହୁତ ଦିନ ଅପେକ୍ଷା କଲେ; କିନ୍ତୁ ପେଗାସସ୍‌ର ଭେଟ ମିଳିଲା ନାହିଁ । ବେଳେବେଳେ ସେ ଫେରିଯିବେ ବୋଲି ମନେ କରନ୍ତି । କିନ୍ତୁ ସେ ସାନ ପିଲାଟି ତାଙ୍କୁ ମନା କରି କହେ, "ମୁଁ ନିଜ ଆଖିରେ ଦେଖିଛି, ପେଗାସସ୍ ଏଠିକି ଆସି ପାଣି ପିଏ; ଘାସ ଉପରେ ଗଡ଼େ । ଦେଖିବ, ଯେଉଁଦିନ ହେଉ ସେ ନିଶ୍ଚେ ଏଠିକି ଆସିବ ।"

ଏଣେ ବେଲରଫୋନ୍‌ଙ୍କ ମନ ଅସ୍ଥିର । ଖବର ମିଳୁଥାଏ, ସାଇମେରା ଲିସିଆରେ ଘୋର ଉତ୍ପାତ କରୁଛି । ଅନେକ ଲୋକଙ୍କୁ ଖାଇ ଗଲାଣି । ତା ଡରରେ କେତେ ଲୋକ ରାଜ୍ୟ ଛାଡ଼ି ଫେରିଗଲେଣି । କେତେ ଦିନ ଆଉ ସେ ଚାହିଁ ରହିବେ ? କେବେ ପେଗାସସକୁ ଧରି ସେ ଅସୁରକୁ ମାରିବେ, ଲୋକଙ୍କୁ ରକ୍ଷା କରିବେ ? ଚାହୁଁ ଚାହୁଁ ତାଙ୍କ ବାଳ ପାଚିଯିବ । ବୁଢ଼ାଦିନେ କଣ ଅସୁର ସାଥିରେ ଲଢ଼ିବାକୁ ତାଙ୍କର ବଳ ଥିବ ।"

ଦିନେ ପିଲାଟି କହିଲା, "ବେଲରଫୋନ୍, ଆଜି ପେଗାସସ୍ ନିଶ୍ଚେ ଏଠିକି ଆସିବ । ମୋ ମନ ଭିତରେ କିଏ କହୁଛି ସେ ଆଜି ଆସିବ ।"

ସେ ଦିନଯାକ ପିଲାଟି ବେଲରଫୋନ୍‌ଙ୍କ ପାଖେ ପାଖେ ରହି ଆକାଶକୁ ଚାହିଁଥାଏ । ଦୁହେଁଯାକ ଟିକିଏ ଟିକିଏ ରୁଟି ଖାଇ ଝରଣାରୁ ପାଣି ପିଇଲେ; ବିଶ୍ରାମ ପାଇଁ ଝରଣା କୂଳର ଗଛଛାଇ ତଳେ ବସିରହିଲେ ।

ହଠାତ୍ ପିଲାଟି ବେଲରଫୋନ୍‌ଙ୍କ ଦେହରେ ହାତ ମାରି ଚୁପ୍ ଚୁପ୍ କରି କହିଲା, "ଏଇ ଝରଣାର ପାଣିକି ଚାହଁ ।"

ବେଲରଫୋନ୍ ଝରଣା ପାଣିକି ଚାହିଁଲେ । ପାଣି ଦର୍ପଣ ପରି ନିର୍ମଳ । ବେଲରଫୋନ୍ ପାଣିରେ ଗୋଟାଏ ଛାଇ ଦେଖି ପାରିଲେ ।

ସେ ଭାବିଲେ, ଏହା ଗୋଟାଏ ପକ୍ଷୀର ଛାଇ ହେବ । ପକ୍ଷୀଟା ଆକାଶରେ ଖୁବ୍ ଉଚ୍ଚରେ ଉଡ଼ୁଛି ଓ ତାର ଡେଣା ଉପରେ ସୂର୍ଯ୍ୟ କିରଣ ପଡ଼ୁଥିବାରୁ ଚକ୍ ଚକ୍ କରୁଛି ।

ପିଲାଟି ପୁଣି କହିଲା, "ଭଲ କରି ଦେଖ । ମୁଁ ଦେଖି ପାରିଲିଣି । ଏ ଚଢ଼େଇର ଛାଇ ନୁହେଁ; ପେଗାସସ୍‌ର ଛାଇ ।"

ବେଲରଫୋନ୍‌ଙ୍କ ଛାତି ଦମ୍ ଦମ୍ ପଡ଼ିଲା । ସତେ କଅଣ ସେ ମାସ ମାସ ଧରି ଯେଉଁ ପକ୍ଷିରାଜ ଘୋଡ଼ାକୁ ଚାହିଁ ବସିଥିଲେ, ସେଇ ତାଙ୍କ ପାଖକୁ ଉଡ଼ି ଆସୁଛି ? ସେ ପିଲାଟିକୁ କୋଳରେ ଟେକି ନେଇ ଗଛ ଉହାଡ଼ରେ ଲୁଚିଗଲେ । ପେଗାସସ୍ ସେମାନଙ୍କୁ ଦେଖିଲେ ସେଠାରେ ନ ଓହ୍ଲାଇ ଚାଲିଯିବ—ଏହି ଭୟରେ ସେମାନେ ଲୁଚିଗଲେ ପକ୍ଷିରାଜକୁ ଅନାଇଁଲେ । ଆକାଶରେ ଉଡ଼ିଲା ବେଳେ ତାର ଧଳା ଡେଣା ଉପରେ ସୂର୍ଯ୍ୟକିରଣ ପଡ଼ିବାରୁ ତାହା ଚକ୍ ଚକ୍ ଦିଶୁଥିଲା । ଘୋଡ଼ାଟିର ସର୍ବାଙ୍ଗ ଧଳା ଓ ଅତି ସୁନ୍ଦର ।

ପେଗାସସ୍ କ୍ରମେ ତଳକୁ ତଳକୁ ଖସିଲା । ତାର ଡେଣା ଦୁଇଟି ପ୍ରସାରିତ ରହିଥାଏ । ଶେଷରେ ତାର ପାଦ ଘାସକୁ ଛୁଇଁଲା । ସେତେବେଳେ ତାର ଡେଣା ବନ୍ଦ ହୋଇଗଲା ।

ଝରଣା କୂଳକୁ ଯାଇ ସେ ମୁଣ୍ଡ ନୁଆଁଇ ପାଣି ପିଇଲା । ଥରେ ପିଇ ଟିକିଏ ବିଶ୍ରାମ ନେଉଥାଏ; ପୁଣି ମୁଣ୍ଡ ନୁଆଁଇ ପିଉଥାଏ । ଏହିପରି କେତେଥର ପିଇବା ପରେ ତାର ମନରେ ସନ୍ତୋଷ ଆସିଲା ପରି ବୋଧହେଲା ।

ପାଣି ପିଇବା ପରେ ସେ ଝରଣା କୂଳରେ ଥିବା ଘାସ ଓ ଲତାରୁ କିଛି ଖାଇ ଟିକିଏ ଏପାଖ ସେପାଖ ଦୌଡ଼ିଲା । ସେ ଆକାଶରେ ଉଡ଼ିପାରୁଥିଲେ ହେଁ ଭୂଇଁ ଉପରେ ଦୌଡ଼ିବାରେ ମଧ୍ୟ ତାର ଆନନ୍ଦ ଆସୁଥିଲା । ବେଳେବେଳେ ସେ ଭୂଇଁଠାରୁ ଅଳ୍ପ ଦୂର

ଉପରକୁ ଯାଇ ପୁଣି ଫେରି ଆସୁଥିଲା । ବେଲାରଫୋନ୍ ଓ ପିଲା ଦୁହେଁ ଯାକ ପକ୍ଷିରାଜ ଘୋଡ଼ାର ଖେଳ କୌତୁକ ଦେଖୁଥାନ୍ତି । ବେଲାରଫୋନ୍ ମନେ କରୁଥାନ୍ତି, ଏପରି ସୁନ୍ଦର ଘୋଡ଼ା ଉପରେ ଲଗାମ ଲଗାଇ ତାର ସ୍ୱାଧୀନତାରେ ବାଧାଦେବା ଏକ ପାପ କାର୍ଯ୍ୟ ହେବ ।

କିଛି ସମୟ ପରେ ପେଗାସସ୍ ଡେଣା ଦୁଇଟିକୁ ଯାକିଦେଇ ଘାସ ଉପରେ କେତେ ଥର ଗଡ଼ିଲା । କେତେବେଳେ ସେ ଗୋଡ଼ ଗୁଡ଼ିକ ଉପରକୁ ଟେକି ଦେଉଥାଏ । ବେଲାରଫୋନ୍ ଚୁପ୍ ହୋଇ ଘୋଡ଼ାର ଏହି କୌତୁକ ଦେଖୁଥାନ୍ତି ।

ଘୋଡ଼ା ଆଗ ଗୋଡ଼ ଦୁଇଟା ତଳକୁ ଆଣି ପୁଣି ଠିଆ ହେବାର ଉଦ୍ୟମ କଲା । ବେଲାରଫୋନ୍ ଦେଖିଲେ ପେଗାସସ୍ ଫେରିଯିବାକୁ ବସିଲାଣି, ଆଉ ଡେରି କଲେ ଚଳିବ ନାହିଁ । ସେ ହଠାତ୍ ଗଛମୂଳରୁ ଦଉଡ଼ି ଆସି ପକ୍ଷିରାଜର ପିଠି ଉପରେ ବସିଗଲେ । ପେଗାସସ୍ କେବେ କାହାରିକୁ ପିଠିରେ ବସାଇ ନ ଥିଲା; ତେଣୁ ସେ ଡେଇଁ ପଡ଼ିଲା । ସେହି ଡିଆଁରେ ସେ ପାଞ୍ଚଶହ ଫୁଟ ଉଚ୍ଚକୁ ଉଠିଗଲା । ଘୋଡ଼ା ଭୂଇଁରେ ଖସି ପଡ଼ିବା ସଙ୍ଗେ ସେ ମଧ୍ୟ ଖସିପଡ଼ିଲେ; ମାତ୍ର ସେ ଘୋଡ଼ା ପିଠିରୁ ଆଦୌ ଓହ୍ଲାଇଲେ ନାହିଁ । ତାଙ୍କୁ ଫିଙ୍ଗିଦେବା ପାଇଁ ଘୋଡ଼ା ଯେତେ ଚେଷ୍ଟା କଲେ ସୁଦ୍ଧା ପାରିଲା ନାହିଁ ।

ପେଗାସସ୍ ବେଲାରଫୋନ୍‌ଙ୍କୁ କାମୁଡ଼ିବାକୁ ବସିଲା; ପଛ ଗୋଡ଼ରେ ନାଡ ମାରିଲା; କିନ୍ତୁ କାହିଁରେ କିଛି ହେଲାନାହିଁ । ତାଙ୍କ ଭଳି ଘୋଡ଼ାସବାରକୁ ଫିଙ୍ଗିଦେବା କଅଣ ସହଜ ? ହେଲେ ଉଣ୍ଡି ବେଲାରଫୋନ୍ ତା ଦେହରେ ଲଗାମ ଲଗାଇଦେଲେ । ଏବେ ପକ୍ଷିରାଜ ଯାଏ କୁଆଡ଼େ ? ସେ ବହୁଦିନର ପୋଷା ଘୋଡ଼ା ପରି

ଚୁପ୍ ହୋଇ ରହିଲା । ଏପରି ଦୁର୍ଦ୍ଦାନ୍ତ ଜନ୍ତୁର ସ୍ୱଭାବ ମୁହୂର୍ତ୍ତକେ ବଦଳିଗଲା । ସେ ଧୀର ହୋଇ ବେଲରଫୋନ୍‌ଙ୍କୁ ଅନାଇଲା । ତା ଆଖିରୁ ଲୁହ ଗଡ଼ି ଯାଉଥାଏ । ତାର ଏହି ବାଧ୍ୟତା ଦେଖି ବେଲରଫୋନ୍‌ଙ୍କ ମନରେ ଟିକିଏ କଷ୍ଟ ହେଲା । ସେ ଘୋଡ଼ାଟିକୁ ଆଉଁସି ଆଦର କଲେ । ମନେହେଲା, ପକ୍ଷିରାଜର ମନରେ ଆନନ୍ଦ । ତାର କେହି ପ୍ରଭୁ ନ ଥିଲେ, ସେ କାହାରି କାମରେ ଆସୁ ନ ଥିଲା କି ତାକୁ କେହି ସାହାଯ୍ୟ କରିବାକୁ ନ ଥିଲେ । ଏବେ ସେ ଜଣେ ପ୍ରଭୁ ପାଇଛି; ପୁଣି ସେ ପ୍ରଭୁ ନିର୍ଦ୍ଦୟ ନୁହନ୍ତି । ସେ ତାକୁ ଆପଣାର ସାଥି ଭଳି ବ୍ୟବହାର ଦେଖାଇବେ ।

ଏଥି ମଧ୍ୟରେ ସେମାନେ ଅନେକ ଦୂର ଚାଲିଯାଇଥିଲେ । ହେଲିକନ ପର୍ବତ ଉପରେ ହେଲାକ୍ଷଣି ପେଗାସସ୍ ତା ଉପରେ ଓହ୍ଲାଇଲା । ଏଇ ପର୍ବତ ହେଉଛି ତାର ରହିବା ଜାଗା । ବେଲରଫୋନ୍ ଘୋଡ଼ା ପିଠିରୁ ତଳକୁ ଓହ୍ଲାଇ ପଡ଼ିଲେ । ପେଗାସସ୍ ଆଜଯାକେ ତା ମନଇଚ୍ଛା ବୁଲୁଥିଲା, କେହି ତାକୁ କିଛି କହିବାକୁ ନ ଥିଲା । ଏବେ ତା ଇଚ୍ଛା ବିରୁଦ୍ଧରେ କିଛି କରାଇବା ଅନ୍ୟାୟ ବୋଲି ବେଲରଫୋନ୍ ସ୍ଥିର କଲେ । ସେ ଘୋଡ଼ାର ଲଗାମ କାଢ଼ି ନେଇ କହିଲେ, "ପେଗାସସ୍, ମୁଁ ତୋତେ ଲଗାମ୍ ଦେଇ ଅନ୍ୟାୟ କରିଛି । ସ୍ୱାଧୀନ ରହିବାକୁ କିଏ ନ ଚାହେଁ ? ନିଜ କାମ ପାଇଁ ମୁଁ ତୋର ସ୍ୱାଧୀନତା ହରଣ କରିବି କାହିଁକି ? ତୁ ମୋତେ ଛାଡ଼ି ଯୁଆଡ଼େ ଇଚ୍ଛା ଯା । ମାତ୍ର ଯେବେ ମୋ ପ୍ରତି ତୋର ସ୍ନେହ ଥାଏ, ଆଦର ଥାଏ, ତୁ ମୋ ପାଖେ ପାଖେ ରହ । ମୁଁ ତୋର ପ୍ରଭୁ ହେବାକୁ ଚାହେଁ ନାହିଁ । ତୁ ଇଚ୍ଛା କଲେ ଆମେ ପରସ୍ପର ବନ୍ଧୁ ହୋଇ ରହିବା ।"

ପେଗାସସ୍ ତା ମୁହଁକୁ ନେଇ ବେଲରଫୋନ୍‌ଙ୍କ ମୁହଁ ପାଖରେ ଘଷି ଦେଲା । ବେଲରଫୋନ୍ ମଧ୍ୟ ତା ଗଳାର କେଶରଗୁଡ଼ିକୁ ଆଦରରେ ଆଉଁସି ଦେଲେ । ଜଣାଗଲା, ସେ କହିବାକୁ ଚାହେଁ—ମୁଁ ତୁମ ପାଖେ ପାଖେ ରହିବି । ଆମେ ବନ୍ଧୁ ଭଳି ରହିବା । ବିପଦ ବେଳେ ପରସ୍ପରକୁ ସାହାଯ୍ୟ କରିବା । ତୁମେ ଯାହା କହିବ, ମୁଁ ପ୍ରାଣପଣେ ତା କରିବି ।

କିଛିକ୍ଷଣ ପରେ ପେଗାସସ୍ ତାର ଡେଣା ମେଲାଇ ଉପରକୁ ଉଠିଲା । ସୂର୍ଯ୍ୟ ଅସ୍ତ ହୋଇ ଯାଉଥିଲେ । ସୂର୍ଯ୍ୟଙ୍କର ସୁନେଲି କିରଣରେ ତାର ଡେଣା ବିଚିତ୍ର ଦିଶୁଥାଏ । ସେ ଏତେ ଉପରକୁ ଉଡ଼ିଗଲା ଯେ କିଛି ସମୟ ପରେ ମୋଟେ ଦେଖାଗଲା ନାହିଁ । ବେଲରଫୋନ୍ ଭାବିଲେ, 'ପେଗାସସ୍ ତାଙ୍କୁ ଭଲ ପାଏ ନାହିଁ । ସେଥିପାଇଁ ସେ ତାଙ୍କୁ ଛାଡ଼ି ଚାଲିଗଲା । ଆଉ ଫେରି ଆସିବ ନାହିଁ ।' ଏହା ଭାବିଲାକ୍ଷଣି ତାଙ୍କ ମନରେ କଷ୍ଟ ହେଲା । ପେଗାସସ୍ ସାହାଯ୍ୟ ନ କଲେ ସେ ରାକ୍ଷସକୁ ମାରିବେ କିପରି ?

କିଛି ସମୟ ଗଲା । ସେତେବେଳକୁ ସୂର୍ଯ୍ୟ ବୁଡ଼ି ଗଲେଣି । ଟିକିଏ ଟିକିଏ ଜହ୍ନ ଆଲୁଅ ପଡ଼ୁଛି । ଏହି ସମୟରେ ପେଗାସସ୍‌ର ଡେଣାର ଶବ୍ଦ ମୁଣ୍ଡ ଉପରେ ଶୁଣାଗଲା । ବେଲରଫୋନ୍ ଦେଖିଲେ, ପକ୍ଷିରାଜ ଫେରି ଆସୁଛି । ତାଙ୍କ ମନରେ ଭାରି ଆନନ୍ଦ । ତେବେ ପେଗାସସ୍ ତାଙ୍କୁ ଛାଡ଼ି ଯିବାକୁ ଇଚ୍ଛା କରେ ନାହିଁ । ସେ ତଳକୁ ଆସିଲା ମାତ୍ରେ ବେଲରଫୋନ୍ ତା ଦେହ ଆଉଁସି ଦେଲେ, ତା ବେକକୁ କୁଣ୍ଢାଇ କେତେବେଳ ଯାଏ ଆଦର କଲେ । ପେଗାସସ୍ ଧୀର ସ୍ୱରରେ ବୋବାଇ ଜଣାଇ ଦେଲା, "ମୁଁ ତୁମ ପାଖେ ପାଖେ ରହି ତୁମର ସେବା କରିବି ।"

ରାତ୍ରରେ ଦୁହେଁଯାକ ସେହି ପାହାଡ଼ ଉପରେ ରହିଲେ । ବେଲାରଫୋନ୍ ପକ୍ଷିରାଜର ଗଳାରେ ଦୁଇ ହାତକୁ ବେଢ଼ାଇ ତା ପାଖରେ ଶୋଇପଡ଼ିଲେ ।

ସକାଳ ହେଲା । ଦୁହେଁ ଉଠିଲେ । ପେଗାସସ୍ ଛୁଡ଼ା ହୋଇ ବେଲାରଫୋନ୍ଙ୍କ ଦେହରେ ଘଷି ହେଲା । ସେ ବୁଝିପାରିଲେ, ପକ୍ଷିରାଜ ତାଙ୍କୁ ବୁଲିଯିବାକୁ ଡାକୁଛି । ସେ ଘୋଡ଼ା ପିଠିରେ ବସି ଆକାଶକୁ ଉଠିଲେ । କେତେ ଆଡ଼ ବୁଲି କେତେ ଗାଆଁ, ସହର, ବଣ, ନଈ, ପର୍ବତ ଦେଖିଲେ । ପାଞ୍ଚ ସାତ ହଜାର ମାଇଲ ଉଡ଼ିଲା ପରେ ପେଗାସସ୍ ପୁଣି ହେଲିକନ ପର୍ବତ ଉପରେ ଓହ୍ଲାଇଲା ।

ଏହିପରି ପ୍ରତିଦିନ ପେଗାସସ୍ ବେଲାରଫୋନ୍ଙ୍କୁ ପିଠିରେ ବସାଇ ନାନା ଆଡ଼ ବୁଲାଇଆଣେ । ଏତେ ବାଟ ଉଡ଼ିଲେ ମଧ୍ୟ ସେ କେବେ କ୍ଲାନ୍ତ ହୁଏ ନାହିଁ । ଏବେ ଦୁହେଁ ଦୁହିଁଙ୍କ ମନକଥା ବୁଝିପାରିଲେ । ବେଳେବେଳେ ପେଗାସସ୍ ଏତେ ଉଚ୍ଚକୁ ଉଡ଼ିଯାଏ ଯେ ପୃଥିବୀର ଗଛ ଲତା ବାରି ହୁଏ ନାହିଁ । ପୃଥିବୀଟା ଗୋଟାଏ ରୁପା ଥାଳି ପରି ଦିଶେ । ବେଲାରଫୋନ ମନେକରନ୍ତି, ଏ କଅଣ ଆଉ ଗୋଟାଏ ଚନ୍ଦ୍ର ! ଆଉ କେତେବେଳେ ମେଘୁଆ ପାଗ ହେଲେ ଆକାଶରେ ମେଘ ଖଣ୍ଡ ଭାସୁଥିବାର ଦେଖାଯାଏ । ବେଲାରଫୋନ୍ଙ୍କୁ ପିଠିରେ ବସାଇ ପେଗାସସ୍ ଉଚ୍ଚକୁ ଉଡ଼ିଯାଏ । ସେଠାରେ ଚକ୍ ଚକ୍ ସୂର୍ଯ୍ୟକିରଣ ପଡ଼ୁଥାଏ । ତଳକୁ ଚାହିଁଲେ ମେଘଗୁଡ଼ାକ ବରଫଖଣ୍ଡ ଭଳି ଦେଖାଯାଉଥାନ୍ତି ।

ଏହିପରି ଆନନ୍ଦରେ କେତେଦିନ କଟିଗଲା । ବେଲାର-ଫୋନ୍ଙ୍କର ମନେପଡ଼ିଲା ରାଇମେରା କଥା । ତାକୁ ମାରିବାକୁ ସେ ପ୍ରତିଜ୍ଞା କରି ବାହାରିଥିଲେ । ଆଉ ବିଳମ୍ବ କଲେ ଚଳିବ ନାହିଁ ।

ଏବେ ଆକାଶର ଯେତେ ଉଚ୍ଚକୁ ଗଲେ ମଧ୍ୟ ବେଲାର-ଫୋନ୍‌ଙ୍କୁ ଡର ଲାଗେ ନାହିଁ । ଘୋଡ଼ାକୁ ନିଜ ମନ କଥା ଜଣାଇବାର ଉପାୟ ବି ସେ ଶିଖିଗଲେଣି । କେଉଁଠି ହାତ କି ଗୋଡ଼ ମାରିଲେ କଅଣ କରିବାକୁ ହେବ, ତାହା ପେଗାସସ୍ ବୁଝି ସାରିଲାଣି । ଅସୁରକୁ ମାରିବାକୁ ଚେଷ୍ଟା କରିବାକୁ ହେବ ।

ଦିନେ ରାତିରେ ବୁଢ଼ୀହୋଜାକ ହିପୋକ୍ରିନ ବୋଲି ଗୋଟିଏ ଝରଣା କୂଳରେ ଶୋଇଲେ । ରାତିରେ ବେଶ୍ ନିଦ ହେଲା । ସକାଳ ହେବାରୁ ଦୁହେଁ ଉଠି ଝରଣାର ମଧୁର ଜଳରୁ ପେଟ ପୂରି କରି ପିଇଲେ । ପେଗାସସ ଅନ୍ୟ ଦିନ ପରି ବେକଟି ଲମ୍ବାଇ ଦେବାରୁ ବେଲାରଫୋନ୍ ତା ଦେହରେ ଲଗାମ୍ ଲଗାଇ ଦେଲେ । ଟିକିଏ ଏପାଖ ସେପାଖ ଦୌଡ଼ିବାରୁ ଜଣାଗଲା ଯେ ପକ୍ଷିରାଜର ମନ ଖୁସି ଅଛି—ସେ ଉଡ଼ିଯିବାକୁ ଚାହେଁ ।

ବେଲାରଫୋନ୍‌ଙ୍କର ଇଚ୍ଛା, ଆଉ ବସି ରହିଲେ ଚଳିବ ନାହିଁ । ଅସୁରଟାକୁ ଜବତ କରିବା ଦରକାର । ସେ ବେକରେ ଢାଲ ଓହଳାଇ ଦେଇ ଖଣ୍ଡା ଧରି ପକ୍ଷିରାଜ ଉପରେ ବସିଲେ । ଭୁହୁଁ ଭୁହୁଁ ପୃଥିବୀ ଉପରୁ ପାଞ୍ଚ ମାଇଲ ଉଚ୍ଚକୁ ପକ୍ଷିରାଜ ଉଠିଗଲା । ସେଠାରୁ ପୃଥିବୀ ଉପର ସଫା ଦିଶୁଥାଏ । ବେଲାରଫୋନ୍ ଘୋଡ଼ାକୁ ପୂର୍ବ ଦିଗକୁ ଚଳାଇଲେ । କିଛି ସମୟ ପରେ ଲିସିଆ ରାଜ୍ୟର ପାହାଡ଼ ପର୍ବତ, ନଦୀ ଉପତ୍ୟକା ସବୁ ପରିଷ୍କାରରୂପେ ଦେଖାଗଲା ।

ଦୁହେଁଯାକ ମେଘ ଆଡ଼ୁଆଳରେ ରହି ସାଇମେରାର ସନ୍ଧାନ ନେଲେ । ଟିକିଏ ଦୂରରେ ଗୁଡ଼ାଏ ଘରର କାନ୍ଥ ଛିଡ଼ା ହୋଇଛି, ଚାଳ ନାହିଁ, ପାଖରେ ପାଉଁଶ ଜମା ହୋଇଛି । କେତେ ଗଦା ହାଡ଼ ଦିଶୁଛି । ଜନ ପ୍ରାଣୀର ଦେଖାନାହିଁ । ବେଲାରଫୋନ୍ ଅନୁମାନ କରି

ନେଲେ, ଏ ସବୁ ସାଇମେରାର କାମ । ସେ ଯେଉଁ ମଣିଷ, ଗୋରୁ, ମଇଁଷି ଆଦି ଖାଇଛି, ଏଗୁଡ଼ାକ ସେଇମାନଙ୍କ ହାଡ଼ । ତାର ମୁହଁରୁ ନିଆଁ ବାହାରି ଗାଆଁ ଗଣ୍ଡା ସବୁ ପୋଡ଼ି ଦେଇଛି । ତେବେ ସାଇମେରା ରହିବାର ଗୁହା ଏହାରି ପାଖରେ କେଉଁଠି ହୋଇଥିବ ।

ବେଲରଫୋନ୍ ଦେଖିଲେ, ଉପତ୍ୟକା ଭିତରେ ଗୋଟାଏ ଜାଗାରୁ ଧୂଆଁ ବାହାରୁଛି । ଇସାରା ପାଇ ପେଗାସସ୍ ତଳକୁ ଖସି ଆସି ଭୂଇଁଠାରୁ ଅଳ୍ପ କେତେ ଗଜ ଉଚ୍ଚାରେ ରହିଲା । ପାହାଡ଼ ଧାରରେ ଗୋଟିଏ ଗୁହା ଭିତରୁ ଏହି ଧୂଆଁ ଆସୁଥିଲା । ଭଲକରି ଚାହିଁବାରୁ ବେଲରଫୋନ୍ ଜାଣିପାରିଲେ ଯେ ଗୁହା ଭିତରୁ ତିନି ଦମକା ନିଆଁ ବାହାରୁଛି । ସାଇମେରାର ତିନି ମୁଣ୍ଡରୁ ଏ ନିଆଁ ବାହାରୁଛି ବୋଲି ତାଙ୍କର ସନ୍ଦେହ ହେଲା । ସେ ଗୁହା ଭିତରକୁ ଅନାଇ ଦେଖିଲେ, ତାଙ୍କ ଅନୁମାନ ସତ୍ୟ । ସିଂହ, ଛେଳି ଓ ସାପ ଏ ତିନି ମୁଣ୍ଡରୁ ନିଃଶ୍ୱାସ ନେଲାବେଳେ ଦମକାଏ ଲେଖାଏଁ ନିଆଁ ବାହାରୁଛି । ପେଗାସସ୍ ମଧ୍ୟ ସବୁ ଦେଖିପାରିଲା । ସେ ଯୁଦ୍ଧପାଇଁ ପ୍ରସ୍ତୁତ ରହି ରହିବାକୁ ଲାଗିଲା ।

ଘୋଡ଼ାର ଶବ୍ଦ ଶୁଣି ତିନିଟାଯାକ ମୁଣ୍ଡ ଆହୁରି ଜୋର୍‌ରେ ନିଆଁ ବାହାର କଲେ । ଅସୁରଟା ଗୁହା ଭିତରୁ ବାହାରି ପଡ଼ିଲା । ତାର ନଖ, ତାର ମୁଣ୍ଡ ଓ ତାର ମୁହଁରୁ ବାହାରୁଥିବା ନିଆଁ ଏସବୁ ଦେଖିଲେ ରକ୍ତ ପାଣି ଫାଟିଯିବ । ସେ ଘୋଡ଼ାକୁ ମାଡ଼ି ବସିବ ବୋଲି ଡେଇଁ ପଡ଼ିଲା; କିନ୍ତୁ ପେଗାସସ୍ ଯେମିତି ଚଞ୍ଚଳ, ସେମିତି ସାହସୀ । ସେ ହଠାତ୍ ଉପରକୁ ଉଠିଗଲା । ଅସୁର କାହାକୁ ଧରି ପାରିଲା ନାହିଁ ।

ବେଲାରଫୋନ୍ ଖଣ୍ଡା ବାହାର କଲେ; ଚୁପ୍ ଚୁପ୍ କରି ପେଗାସସ୍‌ର କାନରେ କହିଲେ, "ତୁ ମୋର ବନ୍ଧୁ । ମୁଁ ଏ

ଅସୁରକୁ ମାରିବାକୁ ଆସିଛୁ । ତୁ ମତେ ସାହାଯ୍ୟ କର । ମୁଁ ଯଦି ଅସୁରକୁ ମାରି ନ ପାରେ, ତେବେ ମୁଁ ମରିଯିବ ସତେ, ଘରଦୁଆର ଦେଖି ଫେରିବି ନାହିଁ । ତୁ ଯଦି ସାହାଯ୍ୟ ନ କରିବୁ, ତେବେ ତୁ ଏକୁଟିଆ ଫେରିଯିବୁ । ଅସୁର ହାତରେ ମୋର ପ୍ରାଣ ଯିବ ।"

ପେଗାସସ୍ ସତେ ଅବା ବେଲାରଫୋନ୍‌ଙ୍କ କଥା ବୁଝି-ପାରିଲା । ସେ ଧୀରେ ଧୀରେ ନିଜର ନାକଟିକୁ ବେଲାରଫୋନ୍‌ଙ୍କ ମୁହଁପାଖେ ଘଷିଦେଇ ଜଣାଇ ଦେଲା—ଚିନ୍ତା ନାହିଁ, ମୁଁ ପାଖେ ପାଖେ ରହି ସାହାଯ୍ୟ କରିବ । ତୁମେ ଯାହା କରିବାକୁ କହିବ, ତା କରିବାକୁ ପ୍ରସ୍ତୁତ ଅଛି ।

ହଠାତ୍ ପେଗାସସ୍ ତୀର ବେଗରେ ତଳକୁ ଖସିପଡ଼ି ଅସୁରକୁ ଆକ୍ରମଣ କଲା । ବେଲାରଫୋନ୍ ମୁହୂର୍ତ୍ତକ ଭିତରେ ଖଣ୍ଡା ଚଳାଇ ଅସୁରର ଗୋଟାଏ ମୁଣ୍ଡ କାଟି ପକାଇଲେ । ପେଗାସସ୍ ପଛକୁ ଘୁଞ୍ଚିଆସିଲାକ୍ଷଣି ବେଲାରଫୋନ ଦେଖିଲେ ସେ ଅସୁରର ଛେଳି ମୁଣ୍ଡଟା କଟିଯାଇଛି । ଆଉ ଦୁଇଟା ମୁଣ୍ଡ ଅଛି । ଆଗ ଅପେକ୍ଷା ଆହୁରି ଜୋର୍‌ରେ ସେ ଦୁଇ ମୁଣ୍ଡରୁ ହାବୁକା ହାବୁକା ନିଆଁ ବାହାରିଲା । ସିଂହର ଗର୍ଜନ ଓ ସାପର ସୁଁ ସୁଁ ଶବ୍ଦରେ ସେ ଅଞ୍ଚଳଟାଯାକ କମ୍ପି ଗଲା ।

ବେଲାରଫୋନ୍ ଚୁପ୍ କରି ପକ୍ଷିରାଜ ଘୋଡ଼ାର କାନ ପାଖେ କହିଲେ, "ସାବାସ୍ ପେଗାସସ୍ ! ଆଉଥରେ ଚାଲ । ଯେପରି ଆଉ ଗୋଟାଏ ଚୋଟରେ ଦୁଇଟାଯାକ ମୁଣ୍ଡ ଛିଡ଼ିଯିବ ।"

ବେଲାରଫୋନ୍ ଲଗାମକୁ ଧରି ହଲାଇ ଦେଲା ମାତ୍ରେ ପେଗାସସ୍ ଆଗଭଳି ଆଉଥରେ ତଳକୁ ଝାମ୍ପ ଦେଲା । ଦୁଇ ମୁଣ୍ଡକୁ ଲକ୍ଷକରି ବେଲାରଫୋନ୍ ଖଣ୍ଡାରେ ଚୋଟେ ବସାଇଲେ । ଏଥର ପେଗାସସ୍ ବିପଦ ଘଟିଲା । ଚୋଟ ବାଜିବା ଢଙ୍ଗେ ସଙ୍ଗେ ପେଗାସସ୍

ଫେରିପଡ଼ିଲା; ମାତ୍ର ସେଇ ମୁହୂର୍ତ୍ତକ ଭିତରେ ରାକ୍ଷସ ପକ୍ଷିରାଜର ବାଆଁ ଡେଣାରେ ତା ନଖ ବସାଇଦେଲା । ଏହା ଫଳରେ ତାର ସେପାଖ ଡେଣାଟି ଜଖମ ହୋଇଗଲା । ବେଲାରଫୋନ୍ ଦେଖିଲେ ଏଥର ସେ ସିଂହ ମୁଣ୍ଡଟି କାଟି ଦେଇଛନ୍ତି, ମାତ୍ର ସାପ ମୁଣ୍ଡଟି ଆଗପରି ରହିଛି । ଗୋଟିଏ ମୁଣ୍ଡ ନହେଲେ କଅଣ ହେବ, ସେଥିରୁ ତିନିଗୁଣ ଜୋର୍‌ରେ ନିଆଁ ଝଲକ ବାହାରୁଛି । ପାଞ୍ଚଶ ଗଜ ଭିତରେ ସେ ନିଆଁ ତାତରେ ପଶି ହେଉନାହିଁ । ସେଇ ମୁଣ୍ଡର ଗର୍ଜନରେ ପୃଥିବୀ କମ୍ପି ଯାଉଛି; ସେ ଶବ୍ଦ ଘଡ଼ଘଡ଼ିକୁ ବଳି ଯାଉଛି ।

ଲିସିଆର ରାଜାଙ୍କ ନଅର ସେଠାରୁ ପଚିଶ ମାଇଲ ଦୂର । ରାଜା ନିଜ ପ୍ରାସାଦରେ ବସି ଗୋଟାଏ ଭୟଙ୍କର ସ୍ୱ ସ୍ୱ ଶବ୍ଦ ଶୁଣିଲେ; ମଝିରେ ମଝିରେ ଘଡ଼ଘଡ଼ି ଭଳି ଶବ୍ଦ ମଧ୍ୟ ଶୁଭୁଥାଏ । ପ୍ରଥମେ ସେ ଏହାକୁ ଘଡ଼ଘଡ଼ିର ଶବ୍ଦ ବୋଲି ମନେ କରିଥିଲେ; କିନ୍ତୁ ଆକାଶରେ ଅଳ୍ପେ ମେଘ ନ ଥିଲା; ତେବେ ଘଡ଼ଘଡ଼ି ଆସିବ କାହୁଁ ? ପରେ ସେ ଜାଣିପାରିଲେ ଅସୁରର ଗର୍ଜନ ହେତୁ ଏପରି ଶବ୍ଦ ଶୁଣାଯାଉଛି । ସେ ଭୟରେ ଥରିଉଠିଲେ ।

ଏଣେ ପେଗାସସ୍‌ର ବାଆଁ ଡେଣାରେ ଅଘାତ ଲାଗିଥିବାରୁ ସେ ଆକାଶରେ ଟିକଏ ରହିଗଲା । ରାଗରେ ସେ ରଡ଼ିଲା । ଯେପରି ହେଉ, ଅସୁରକୁ ମାରିବ ବୋଲି ସେ ପ୍ରତିଜ୍ଞା କଲା । ବେଲାରଫୋନ୍ ପକ୍ଷିରାଜ ଘୋଡ଼ାର କଷ୍ଟ ବୁଝିପାରି କହିଲେ, "ତୋର କଷ୍ଟ ଦେଖି ମୋ ମନରେ ଦୁଃଖ ହେଉଛି । ପ୍ରତିଶୋଧ ନ ନେଇ ମୁଁ ଛାଡ଼ିବି ନାହିଁ । ଆଉ ଯେଉଁ ଗୋଟାଏ ମୁଣ୍ଡ ଅଛି, ସେଇଟାକୁ କାଟି ଅସୁରକୁ ମାରିଲେ ମୋ ମନରେ ଶାନ୍ତି ଆସିବ । ପାଇମେରା ନିଶ୍ଚୟ ତା କର୍ମର ଫଳ ଭୋଗିବ ।"

ବେଲାରଫୋନ୍ ପୁଣି ଥରେ ଲଗାମକୁ ଟିକଏ ଟାଣି ଦେଇ ଚିତ୍କାର କଲେ । ପେଗାସସ୍ ସିଧା ଲମ୍ଫ ଦେଇ ଅସୁର ମୁହଁ ପାଖରେ ପହଞ୍ଚିଗଲା । ଏଥର ରାକ୍ଷସର ମୁହଁରେ ନିଆଁ ଏତେ ପ୍ରବଳ ଥିଲା ଯେ ସେଥିରେ ଦୁହେଁ ପୋଡ଼ିଯିବାର ଭୟ ଥିଲା । ଭାଗ୍ୟକୁ ସେମାନଙ୍କର ପ୍ରାଣ ରହିଗଲା, ମାତ୍ର ନିଆଁର ତାତିରେ ବେଲାରଫୋନ୍ଙ୍କ ମୁଣ୍ଡରୁ ବାଳ ତାତିଗଲା; ପେଗାସସ୍ର ଗୋଟାଏ ଡେଣାରୁ କେତେକ ଅଂଶ ମଧ୍ୟ ପୋଡ଼ିଗଲା । ସେତେବେଳକୁ ସେମାନେ ଅସୁରଠାରୁ ଶହେହାତ ଦୂରରେ ଥାଇ ମଧ୍ୟ ଏତେ କ୍ଷତ ହେଲା; ତା ପାଖରେ ଥିଲେ କ'ଣ ହୋଇ ନଥାନ୍ତା ?

ସାଇମେରା ନିଜ ଜୀବନ ରକ୍ଷିବା ପାଇଁ ଶେଷ ଉଦ୍ୟମ କଲା । ସେ ଡେଇଁପଡ଼ି ପେଗାସସ୍ ଦେହରେ ଲାଗି ରହିଲା । ସଙ୍ଗେ ସଙ୍ଗେ ତା ଲାଞ୍ଜରେ ତାକୁ ଛନ୍ଦିବାକୁ ଚେଷ୍ଟା କଲା । ବେଲାରଫୋନ୍ ତାଲ ଠିକ ଧରିବାରୁ ସାପମୁଣ୍ଡର ନିଆଁ ସେମାନଙ୍କ ଦେହରେ ବାଜି ପାରିଲା ନାହିଁ । ପେଗାସସ୍ ଅତି ବେଗରେ ଉପରକୁ ଉଠିଲା । ତାର ପିଠି ଉପରେ ବେଲାରଫୋନ୍; ଦେହକୁ ଧରି ଓହଳିଥାଏ ସାଇମେରା । ପେଗାସସ୍ ଶୂନ୍ୟରେ, ତଳେ ରହିଥାଏ ପାହାଡ଼, ବନ, ପର୍ବତ ।

ରାକ୍ଷସର ଦୁଇ ମୁଣ୍ଡ କଟିବା ପରେ ତାକୁ ଭାରି କଷ୍ଟ ହେଉଥିଲା । ସେ ରାଗରେ ଫଁ ଫଁ ହୋଇ କଣ କରିବ ସ୍ଥିର କରି ପାରୁ ନ ଥାଏ । ବେଲାରଫୋନ୍ ଦେଖିଲେ, ଅସୁରର ଛାତିରେ କିଛି ଆବରଣ ନାହିଁ । ସେ ବେଳ ଉଣ୍ଡି ଖଣ୍ଡାଟିକୁ ସେହି ଛାତିରେ ଭୁଷି ଦେଲେ । ଅଳ୍ପ ସମୟ ଭିତରେ ଅସୁରର ପ୍ରାଣ ଛାଡ଼ିଗଲା । ସେ ଆକାଶରୁ ଭୂଇଁ ଉପରେ ଖସିପଡ଼ିଲା । ସେତେବେଳେ ଗୋଟାଏ

ପ୍ରଚଣ୍ଡ ଶବ୍ଦ ବହୁ ଦୂରକୁ ଶୁଣାଗଲା । ଭୂଇଁରେ ପଡ଼ିଲା ପରେ ତା ପେଟର ନିଆଁରେ ସେ ନିଜେ ପୋଡ଼ିହୋଇ ପାଉଁଶ ହୋଇଗଲା ।

ଅସୁର ଶୂନ୍ୟରୁ ଖସିଲାବେଳେ ତାକୁ ଦୂରରୁ ଦେଖି ଲୋକେ ମନେ କରିଥିଲେ ଯେ ଆକାଶରୁ ଗୋଟାଏ ନକ୍ଷତ୍ର ଖସିପଡ଼ିଲା । ଆଉ କେହି କେହି ମନେ କରିଥିଲେ ଯେ ବିଜୁଳି ମାରିଲା; କିନ୍ତୁ ପରଦିନ ସକାଳେ ସେମାନଙ୍କର ଭ୍ରମ ଭାଙ୍ଗିଗଲା । ସେମାନେ ସେଠାକୁ ଆସି ଦେଖିଲେ, ଗୋଟାଏ ଅଞ୍ଚଳ କଳା ପାଉଁଶରେ ପୂରି ଯାଇଛି, ଆଉ ତା ଭିତରେ ଜମା ହୋଇଛି ଗଦାଏ ହାଡ଼ ।

ସାଇମେରାକୁ ମାରି ବେଲାରଫୋନ୍ ପକ୍ଷିରାଜ ଘୋଡ଼ାର ବେକକୁ ଆଉଁଷି ଦେଲେ । ତାକୁ ଚୁମ୍ବନ ଦେଇ ନିଜର କୃତଜ୍ଞତା ଜଣାଇଲେ । ପେଗାସସ୍ ମଧ୍ୟ ଧୀରେ ରାବ କରି ନିଜର ଆନନ୍ଦ ପ୍ରକାଶ କଲା । ଏବେ ନିଜ ଦେଶକୁ ଫେରିବାର କଥା । ବେଲାରଫୋନ୍ ଘୋଡ଼ା କାନ ପାଖରେ କହିଲେ, "ଚାଲ, ଆଗେ ପିରିନ ଝରଣା ପାଖକୁ ଯିବା ।"

ପେଗାସସ୍ ବେଲାରଫୋନ୍‌କୁ ପିଠିରେ ବସାଇ ପିରିନ ନଦୀ କୂଳରେ ପହଞ୍ଚିଲା । ପିରିନର ମଧୁର ଜଳ ପିଇ ସେ ଦୁହେଁ ତୃପ୍ତି ଲାଭ କଲେ । ବେଲାରଫୋନ୍ ଦେଖିବାକୁ ପାଇଲେ, ସେଦିନର ସେହି ବୃଦ୍ଧ ଲୋକଟି ସେଠାରେ ଉପସ୍ଥିତ । ସେ ମଧ୍ୟ ପେଗାସସ୍‌କୁ ଦେଖିପାରି କହିଲା, "ଏବେ ମୋର ଠିକ୍ ମନେପଡ଼ିଲା । ପିଲାଦିନେ ଏଇ ପକ୍ଷିରାଜ ଘୋଡ଼ାକୁ ଥରେ ଦେଖିଥିଲି; କିନ୍ତୁ ସେତେବେଳେ ଯେତେ ସୁନ୍ଦର ଦିଶୁଥିଲା, ଏବେ ସେତେ ସୁନ୍ଦର ଦିଶୁନାହିଁ ।"

ଏହି ସମୟରେ ଗୋଟିଏ ପିଲା ଦଉଡ଼ି ଆସି ବେଲାରଫୋନ୍‌ଙ୍କୁ କହିଲା, "ତୁମେ ସାଇମେରାକୁ ମାରି ଆସିଲ ! ମୁଁ ଜାଣେ ପରା ତୁମେ ତାକୁ ନମାରି ଫେରିବ ନାହିଁ ।"

ବେଲାରଫୋନ୍ ପିଲାଟିକୁ ଆଦରରେ କୋଳକୁ ନେଇ କହିଲେ, "ହଁ ବାପ, ତୋରି ଯୋଗେ ମୁଁ ସାଇମେରାକୁ ମାରି-ପାରିଛି । ତୋରି କଥାରେ ମୁଁ ବିଶ୍ୱାସ କରି ଏତେ ଦିନ ରହି ବସିବାରୁ ସିନା ପକ୍ଷିରାଜ ଘୋଡ଼ାକୁ ପାଇଲି—ପୃଥିବୀ ଉପରେ ଉଡ଼ି କେତେ ରାଜ୍ୟ ଦେଖିଲି—ଶେଷରେ ସାଇମେରାକୁ ମାରିଲି । ତା ନୋହିଥିଲେ ମୁଁ କିଏ, ସାଇମେରା କିଏ ? ତୋର ଏ ସାହାଯ୍ୟ ଜୀବନରେ ଭୁଲି ପାରିବି ନାହିଁ ।"

ପେଗାସସ୍ ପାଣି ପିଇ ଝରଣା କୂଳରେ ବୁଲୁଥିଲା । ବେଲାରଫୋନ୍ ତା ପାଖକୁ ଯାଇ ତାର ଲଗାମ ଫିଟାଇ ଦେଇ କହିଲେ, "ପେଗାସସ୍, ଏଣିକି ତୁ ତୋର ହେଲିକନ ପର୍ବତକୁ ଫେରିଯାଇ ଆନନ୍ଦରେ ରହ । ମୁଁ ତୋତେ ଋଷି ମୋ କାମରେ ଲଗାଇଥିଲି ବୋଲି ମନରେ ଦୁଃଖ କରିବୁ ନାହିଁ । ଏଣିକି ତୁ ସ୍ୱାଧୀନ । ଜୀବନ ଥିବାଯାଏ ମୁଁ ତୋ କଥା ଭୁଲି ପାରିବି ନାହିଁ ।"

କିନ୍ତୁ ପେଗାସସ୍ ପଳାଇଗଲା ନାହିଁ । ସେ ତାର ମୁହଁଟି ବେଲାରଫୋନ୍‌ଙ୍କ କାନ୍ଧ ଉପରେ ରଖିଦେଲା ଓ ତାଙ୍କୁ ଛାଡ଼ି ଯିବାକୁ ଚାହେଁ ନାହିଁ ବୋଲି ଜଣାଇଦେଲା ।

ବେଲାରଫୋନ୍ ପେଗାସସ୍‌ର ମନକଥା ବୁଝିପାରି କହିଲେ, "ହେଉ, ଯେତେଦିନ ଇଚ୍ଛା ସେତେଦିନ ତୁ ମୋ ପାଖରେ ଥିବୁ । ଚାଲ, ଆଗେ ଲିସିଆକୁ । ରାଜାଙ୍କୁ ଜଣାଇଦେବା ସାଇମେରା ମରିଛି ।" ପିଲାଟିଠାରୁ ବିଦାୟ ନେଲାବେଳେ ବେଲାରଫୋନ୍‌ଙ୍କ

ମନରେ ଭାରି କଷ୍ଟ ହେଲା । ସେ ତାକୁ କହିଲେ, "ମୁଁ ଲାପିଥାକୁ ଯାଉଛି, କିନ୍ତୁ ମୁଁ ପୁଣି ଏଇଠାରେ ତୋତେ ଦେଖିବାକୁ ଫେରି ଆସିବି ।"

ଏଇ ପିଲାଟି ବଡ଼ହେଲେ ଗ୍ରୀସ୍‌ର ଜଣେ ବଡ଼ କବି ରୂପେ ପ୍ରସିଦ୍ଧ ହେଲା । ସେ କଳ୍ପନାରାଜ୍ୟରେ ଯେତେ ବୁଲିଲା, ଯେତେ ଅଦ୍ଭୁତ କାର୍ଯ୍ୟ କଲା, ତାହା ତୁଳନାରେ ବେଲାରଫୋନ୍‌ଙ୍କ କୃତିତ୍ୱ ବଡ଼ ନୁହେଁ ।



# ସାଇକ୍ଲପ୍ସଙ୍କ ନଅର

ଇଥାକା ହେଉଛି ଗ୍ରୀସର ଏକ ରାଜ୍ୟ । ସେହି ରାଜ୍ୟର ରାଜା ଅଲିସେସ ଥରେ ଟ୍ରୟକୁ ଯୁଦ୍ଧ କରିବାକୁ ଯାଇଥିଲେ । ଅନେକ ଦିନ ଯାଏ ଯୁଦ୍ଧ ଚାଲିଲା । ଯୁଦ୍ଧ ଶେଷରେ ସେ ଆପଣା ସୈନ୍ୟମାନଙ୍କୁ ନେଇ ନିଜ ରାଜ୍ୟକୁ ଫେରିଲେ । କିନ୍ତୁ ବାଟରେ ତାଙ୍କୁ ନାନା ବିପଦ ପଡ଼ିଥିଲା । ସମୁଦ୍ରରେ ଆସିବାବେଳେ ଝଡ଼ ଯୋଗେ ତାଙ୍କର ଅନେକ ଜାହାଜ ନଷ୍ଟ ହୋଇ ଯାଇଥିଲା ଓ ତାଙ୍କର ଅନେକ ସୈନ୍ୟ ବାଟରେ ପ୍ରାଣ ହରାଇଥିଲେ । ଏହି ସବୁ ବିପଦବେଳେ ଅଲିସେସ ଅପୂର୍ବ ଧୈର୍ଯ୍ୟ ଓ ସାହସ ଦେଖାଇଥିଲେ ।

ଏହିପରି କେତେ ବିପଦ କଟାଇବା ପରେ ଥରେ ତାଙ୍କ ଜାହାଜ ଗୋଟିଏ ଅଜଣା ଦ୍ୱୀପର କୂଳରେ ଲାଗିଲା । ସେତେବେଳକୁ ଜାହାଜରୁ ପିଇବା ପାଣି ଓ ଖାଇବା ଜିନିଷ ସରି ଆସିଥିଲା । ଦ୍ୱୀପରୁ ମଧୁର ପାଣି ଓ ଖାଦ୍ୟ ସଂଗ୍ରହ କରି ଆଣିବା ସକାଶେ ଅଲିସେସ କେତେଜଣ ଲୋକଙ୍କୁ ପଠାଇଲେ । ଦ୍ୱୀପରେ କେତେକ ବଣଜଙ୍ଗଲ ଦେଖାଯାଉଥିଲା । ସେଠାରେ ମଣିଷ ଥିବା ଅନୁମାନ କରି ଲୋକମାନେ ସେ ଆଡ଼କୁ ଗଲେ, କିନ୍ତୁ ସେଦିନ ସେମାନେ ଫେରି ଆସିଲେ ନାହିଁ ।

ଏଣେ ଜାହାଜରେ ଅଲସେସ ଓ ତାଙ୍କର ଅବଶିଷ୍ଟ ଲୋକେ ଅପେକ୍ଷା କରି ରହିଥାନ୍ତି । ଏହିପରି ଗୃହିଁ ଗୃହିଁ ଅନେକ ଦିନ ଗଲା । ମାତ୍ର ଯେଉଁମାନେ ଦ୍ୱୀପରେ ଓହ୍ଲାଇ ପାଣି ଓ ଖାଦ୍ୟ ଆଣିବାକୁ ଯାଇଥିଲେ, ସେମାନଙ୍କର ଦେଖା ନାହିଁ । ଶେଷରେ ଅଲସେସ୍ ସ୍ଥିର କଲେ ଯେ ସେ ନିଜେ ଦ୍ୱୀପକୁ ଯାଇ ସେମାନଙ୍କର ସନ୍ଧାନ ନେବେ । ଜାହାଜରେ ରହିଥିବା ଅନ୍ୟ ଲୋକମାନେ କହିଲେ, "ଆପଣ ହେଉଛନ୍ତି ଆମମାନଙ୍କର ରାଜା । ଯଦି ଦୈବାତ୍ କିଛି ବିପଦ ଘଟେ, ଆପଣ ଫେରି ଆସି ନ ପାରନ୍ତି, ତେବେ ହେବ କଅଣ ? ଆପଣଙ୍କୁ ନ ନେଇ ଆମେ ଇଥାକାକୁ ଫେରିଯିବା ଅସମ୍ଭବ । ପୁଣି ଆପଣଙ୍କ ସାହସ ଓ ବୁଦ୍ଧି କୌଶଳରେ ଆମେ ଏତେ ବିପଦ ଏଡ଼ି ଆସିଛୁ । ଆପଣ ଆମମାନଙ୍କୁ ଛାଡ଼ି ଗଲେ ଆମେ କିପରି ରହିବୁ ? କିଏ ଆମର ନେତା ହୋଇ ବୁଦ୍ଧି ବତେଇବ ? ଆପଣ ନିଜେ ଯାଆନ୍ତୁ ନାହିଁ । ଅନ୍ୟ କେହି ଯାଉ ।" ଏହିପରି କହି ସେମାନେ ରାଜାଙ୍କୁ ନିବର୍ତ୍ତାଇବାକୁ ବସିଲେ ।

କିନ୍ତୁ ରାଜା ଜିଦ୍ ଧରି ବସିଲେ, ସେ ନିଜେ ଯାଇ ଲୋକଙ୍କର ସନ୍ଧାନ ନେବେ । ସେ କହିଲେ, "ତୁମେ କହୁଛ, ମୁଁ ତୁମର ରାଜା, ତୁମର ନେତା, ତୁମର ବୁଦ୍ଧିଦାତା । ତେଣୁ ମୋର କର୍ତ୍ତବ୍ୟ ହେଉଛି, ନିଜେ ଯାଇ ସେମାନଙ୍କୁ ଖୋଜିବା । ସେମାନେ ଆମର ସାଙ୍ଗସାଥି । ଆମ ସାଥିରେ ସେମାନେ ଏତେ ଦିନ ଯୁଦ୍ଧ କରିଛନ୍ତି; ସୁଖ ଦୁଃଖରେ ଭାଗୀ ହୋଇଛନ୍ତି । ସେମାନଙ୍କୁ ଛାଡ଼ିଯିବା ମୋ ପକ୍ଷରେ ଅସମ୍ଭବ । ସେମାନଙ୍କୁ ଉଦ୍ଧାର ନ କଲେ ମୁଁ ରାଜା ହେବାର ଯୋଗ୍ୟ ନୁହେଁ । ତେଣୁ ମୁଁ ଦ୍ୱୀପକୁ ଯାଇ ସେମାନଙ୍କୁ ସାଥିରେ ଆଣି ଆସିବି; ନ ହେଲେ ପ୍ରାଣ ହରାଇବି । ଯାହା ମୁଁ

ନଜେ କରିବାକୁ କୁଣ୍ଠିତ, ସେ କାମର ଭାର ଅନ୍ୟ କାହାକୁ ଦେଇ ପାରିବ ନାହିଁ । ମୁଁ ନିଶ୍ଚୟ ଯିବ ।"

ଏହା କହି ରାଜା ଖଣ୍ଡା ଓ ବର୍ଚ୍ଛା ଧରି ଦ୍ୱୀପରେ ଓହ୍ଲାଇ ସେହି ବଣ ଆଡ଼କୁ ଚାଲିଲେ । କିଛି ଦୂର ଚାଲି ଯିବା ପରେ ଜଣେ ଯୁବକଙ୍କ ସହିତ ତାଙ୍କର ଦେଖା ହେଲା । ସେ ଦେହରେ ଗୋଟିଏ ହାଲୁକା ଜାମା ଓ ମୁଣ୍ଡରେ ଗୋଟିଏ ଟୋପି ପିନ୍ଧିଥିଲେ । ଟୋପିର ଦୁଇପାଖେ ଗୋଟିଏ ଲେଖାଏଁ ଡେଣା ଲାଗିଥାଏ । ତାଙ୍କ ହାତରେ ଗୋଟିଏ ବାଡ଼ି ଥିଲା । ବାଡ଼ିଟି ଏପରି ତିଆରି ଯେ ଠିକ୍ ଦୁଇଟି ସାପ ଗୁଡ଼େଇ ହୋଇଥିଲା ପରି ଦିଶୁଥିଲା । ସେ ଏପରି ବେଗରେ ଚାଲୁଥିଲେ ଯେ ତାଙ୍କ ପାଦ ଭୂଇଁରେ ଲାଗିଲା ପରି ଜଣାପଡ଼ୁ ନଥିଲା । ଯେ କେହି ବିଚାରିବ, ତାଙ୍କ ପାଦରେ ଡେଣା ଲାଗିଛି କି ? ଅଲିସେସ ଏହାଙ୍କୁ ଭଲ ରୂପେ ଚିହ୍ନିଥିଲେ; ଏହାଙ୍କଠାରୁ ସେ ଅନେକ ଜ୍ଞାନ ଅର୍ଜିଥିଲେ । ଏ ହେଉଛନ୍ତି ମର୍କ୍ୟୁରି ।

ଅଲିସେସଙ୍କୁ ଏ ଦ୍ୱୀପରେ ଯାଉଥିବାର ଦେଖି ମର୍କ୍ୟୁରି ପଚାରିଲେ, "ତୁମେ ତରତର ହୋଇ କୁଆଡ଼େ ଚାଲିଛ ? ଏ ଦ୍ୱୀପକୁ ଆସିବା କେଡ଼େ ବିପଦର କଥା କଣ ଜାଣିନାହଁ ? ଏଠାରେ ସାର୍ସି ବୋଲି ଜଣେ ସ୍ତ୍ରୀ ଅଛି । ସେ ଗୁଣି ବିଦ୍ୟା ଜାଣେ । ଯିଏ ଏ ଦ୍ୱୀପକୁ ଆସେ, ତାକୁ ସେ ଗୁଣି ବିଦ୍ୟା ବଳରେ ଗୋଟାଏ ପଶୁ, ନୋହିଲେ ଗୋଟାଏ ପକ୍ଷୀ କରିଦିଏ । ସେ ଯାହାଠାରେ ଯେଉଁ ଜନ୍ତୁର ଗୁଣ ଦେଖେ, ତାକୁ ସେଇ ଜନ୍ତୁ କରିଦିଏ । ସେଥିପାଇଁ ତୁମେ ଏ ଦ୍ୱୀପରେ ଗୋଟାଏ ହେଲେ ମଣିଷ ଦେଖିବାକୁ ପାଇବ ନାହିଁ । ଦେଖିବ ଖାଲି ବାଘ, ସିଂହ, ଘୁଷୁରି, ଘାରି, କାଉ, ପେଚା ଆଦି । ସେମାନେ ସବୁ ମଣିଷ ଥିଲେ । ମନ୍ତ୍ର କରି ସେ ସେମାନଙ୍କୁ ଏପରି ଜୀବଜନ୍ତୁ କରି ଦେଇଛି । ଏଇ ବଣ ମଝିରେ ତାର ନଅର ଦିଶୁଛି । ଏହା ସୁନ୍ଦର

ମାର୍ବଲ ପଥରରେ ତିଆରି । ସେଇ ନଅର ଭିତରେ ସେ ରହେ । ତାକୁ ସାବଧାନ ରହିଥିବ ।"

ଅଲିସେସ୍ କହିଲେ, "ମୁଁ ଏ ଦ୍ୱୀପକୁ ଆସିଲାବେଳୁ ଗୋଟାଏ ହଳଦିଆବସନ୍ତ ପକ୍ଷୀ ମୋ ପଛେ ପଛେ ଉଡ଼ି ଆସୁଛି । ତାର ରାବଟି ଅତି କରୁଣ । ତା ରାବ ଶୁଣି ମୁଁ ମନେକଲି, ସତେ ଅବା କିଛି କହିବ ବୋଲି ସେ ମୋତେ ଡାକୁଛି । ସେ କଅଣ ପ୍ରକୃତରେ ହଳଦିଆବସନ୍ତ ଚଢ଼େଇଟିଏ, କି ସାଯ୍ସାର୍ସ କୌଣସି ଲୋକକୁ ଚଢ଼େଇ କରିଦେଇଛି ?"

ମର୍କ୍ୟୁରି ଉତ୍ତର କଲେ, "ସେ ପ୍ରକୃତରେ ହୋଇଛନ୍ତି ରାଜା ପିକସ । ସେ ରାଜା ନିଜର ଚକଚକିଆ ପୋଷାକ, ସୁନାର ମୁକୁଟ ଓ ବେକର ହାର ଯୋଗୁଁ ଗର୍ବ କରୁଥିଲେ । ସେଥିପାଇଁ ସାଯ୍ସାର୍ସ ତାଙ୍କୁ ଗୋଟିଏ ହଳଦିଆବସନ୍ତ ପକ୍ଷୀ କରିଦେଇଛି । ତାର ସ୍ୱର ସେଥିପାଇଁ ଏତେ କରୁଣ ଶୁଭୁଥିବ । ତୁମେ ନଅର ପାଖକୁ ଗଲେ ଅନେକ ସିଂହ, ବାଘ, ଗଧିଆ ପ୍ରଭୃତି ଦେଖିବାକୁ ପାଇବ । ସେମାନେ ତୁମ ପାଖକୁ ଦୌଡ଼ି ଆସିବେ । ସେମାନେ ସବୁ ଆଗେ ତୁମରି ପରି ମଣିଷ ଥିଲେ; କିନ୍ତୁ ସେମାନଙ୍କର ସ୍ୱଭାବ ଥିଲା ହିଂସ୍ର ଓ ନିର୍ଦ୍ଦୟ । ତେଣୁ ସେମାନଙ୍କୁ ସାଯ୍ସାର୍ସ ଏପରି ହିଂସ୍ର ଜନ୍ତୁରେ ପରିଣତ କରିଛି । ସେମାନଙ୍କ ଭିତରୁ ଯାହାର ସ୍ୱଭାବ ଯେଉଁ ଜନ୍ତୁ ପରି, ସେ ତାକୁ ସେହିପରି ଜନ୍ତୁ କରିଦେଇଛି ।"

ଅଲିସେସ୍ ଏହି କଥା ଶୁଣି ବଡ଼ ଚିନ୍ତିତ ହେଲେ । ସେ ମର୍କ୍ୟୁରିଙ୍କୁ ପଚାରିଲେ, "ମୋ ଜାହାଜର କେତେକ ଲୋକ ପାଣି ଓ ଖାଦ୍ୟ ନେବା ପାଇଁ ଏହି ଦ୍ୱୀପରେ ଓହ୍ଲାଇଥିଲେ । ଅନେକ ଦିନ ଗଲାଣି । ସେମାନେ ଫେରି ନଆସିବାରୁ ମୁଁ ସେମାନଙ୍କୁ ଖୋଜିବାକୁ

ଯାଉଛ୍ତି । ସାର୍ସି ସେମାନଙ୍କୁ ଏହିପରି କୌଣସି ଜନ୍ତୁ କରି ଦେଇଛନ୍ତି ବୋଲି ତୁମେ ଭାବୁଛ କି ?"

ମର୍କ୍ୟୁର ହସି ହସି କହିଲେ, "ନିଶ୍ଚୟ, ଏଥିରେ ସନ୍ଦେହ ନାହିଁ । ମୁଁ ଠିକ୍ ଜାଣେ, ସାର୍ସି ପ୍ରଥମେ ସେମାନଙ୍କୁ ନଅରକୁ ନେଇ ଅନେକ ଭଲ ଭଲ ଜିନିଷ ଖାଇବାକୁ ଦେଲା । ସେମାନେ ଏତେ ପେଟୁ ଯେ ଘୁଷୁରି ଭଳି ଗୁଡ଼ାଏ ଖାଇଲେ । ସେମାନେ ଖାଇବା ସ୍ୱଭାବରେ ଘୁଷୁରି ପରି । ତେଣୁ ସାର୍ସି ସେମାନଙ୍କୁ ଘୁଷୁରି କରିଦେଇଛନ୍ତି ।"

ଏ କଥା ଶୁଣି ୟୁଲିସେସଙ୍କର ମୁଣ୍ଡ ଘୂରିଗଲା । ତାଙ୍କ ଜାହାଜରୁ ବାଇଶ ଜଣ ଲୋକ ଦ୍ୱୀପରେ ଓହ୍ଲାଇ ଥିଲେ । ଏବେ ସେ କଅଣ ବାଇଶଟି ଘୁଷୁରି ନେଇ ଫେରିବେ ? ସେ ସ୍ଥିର କଲେ, "ଏହି ଲୋକମାନେ ମୋ ପାଇଁ ଏତେ କଷ୍ଟ ସହି ଅଛନ୍ତି । ମୁଁ ସେମାନଙ୍କୁ ଘୁଷୁରି ଜୀବନରୁ ଉଦ୍ଧାର ନ କରି ଫେରିବି ନାହିଁ । ସେଥିପାଇଁ ଯେତେ କଷ୍ଟ ସହିବାକୁ ପଡ଼ିବ, ସହିବି ।"

ମର୍କ୍ୟୁର କହିଲେ, "ହଁ, ସେମାନଙ୍କୁ ଉଦ୍ଧାର କରିବା ତୁମର କର୍ତ୍ତବ୍ୟ; କିନ୍ତୁ ସେଥିପାଇଁ ଦରକାର ଅସୀମ ଶକ୍ତି ଓ ବୁଦ୍ଧି । ଯଦି ସାର୍ସିର ଟିକିଏ ସୁବିଧା ହୁଏ ଓ ତୁମେ ସାବଧାନ ହୋଇ କାର୍ଯ୍ୟ ନ କର, ତେବେ ତୁମକୁ ସେ ଗୋଟିଏ କୋକିଶିଆଳି କରିଦେବ ।" କଅଣ କରିବାକୁ ହେବ ପରାମର୍ଶ ମାଗିବାରୁ ମର୍କ୍ୟୁରି କହିଲେ, "ମୁଁ ଯେଉଁ ଉପାୟ କହୁଛି, ଠିକ୍ ତାହା କଲେ, ତୁମେ ନିଜକୁ ସାର୍ସି ହାତରୁ ରକ୍ଷା କରି ତୁମର ଅନୁଚରମାନଙ୍କୁ ଉଦ୍ଧାର କରିପାରିବ ।" ଏହା କହି ସେ ଛଡ଼ିରୁ ଗୋଟିଏ ଶ୍ୱେତ ଧଳା ଫୁଲ ତୋଳି ଆଣିଲେ । ସେ ଫୁଲଟିକୁ ୟୁଲିସେସଙ୍କ ହାତରେ ଦେଇ କହିଲେ, "ଏଇ ଫୁଲଟି ନିଅ । ଏହାକୁ ପ୍ରାଣପଣେ ସାଇତି ଜଗି

ରଖିଥିବ । ଏଇଟିର କେତେକ ବିଶେଷ ଶକ୍ତି ଅଛି । ସାରା ପୃଥିବୀରେ ଏହା ଭଳି ଆଉ ଗୋଟିଏ ଫୁଲ ମିଳିବ ନାହିଁ । ମାର୍ବଲର ନଅର ଭିତରେ ପଶିଲାବେଳେ ଫୁଲଟିକୁ ଶୁଙ୍ଘୁଥିବ । ସାପ୍ତାର୍ସ ଖାଇବା ପାଇଁ ତୁମକୁ ଭଲ ଭଲ ଖାଦ୍ୟ ଓ ପିଇବାକୁ ମଦ ଆଣି ଦେବ । ଯେତେବେଳେ ବରାବର ଏଇ ଫୁଲକୁ ଶୁଙ୍ଘିଲେ ସାପ୍ତାର୍ସର ମନ୍ତ୍ର ତୁମ ଉପରେ କାର୍ଯ୍ୟ କରିବ ନାହିଁ । ତୁମେ ରକ୍ଷା ପାଇଯିବ ।"

ଅଲସେସ୍ ଏହି ପରାମର୍ଶ ପାଇଁ ମର୍କ୍ୟୁରିଙ୍କୁ ଧନ୍ୟବାଦ ଦେଲେ । ସେ ଆଉ କିଛି ପ୍ରଶ୍ନ ପଚାରିବେ ବୋଲି ଚାହୁଁଥିଲେ; କିନ୍ତୁ ଦେଖିଲାବେଳକୁ ମର୍କ୍ୟୁରି ସେଠାରୁ ଚାଲିଯାଇଥିଲେ । ଅଲସେସ୍ ଫୁଲଟି ଧରି ଚାଲିଲେ । ସାପ୍ତାର୍ସର ନଅରସାମନା ପଡ଼ିଆରେ ପହଞ୍ଚିଲା ମାତ୍ରେ କେତେ ସିଂହ, ବାଘ, ଗଧିଆ ଆନନ୍ଦରେ ତାଙ୍କ ପାଖକୁ ଦୌଡ଼ି ଆସିଲେ । ସେମାନେ ତାଙ୍କୁ ଆଦରରେ ଡାକିଲା ପରି ଶବ୍ଦ କରୁଥିଲେ । କିନ୍ତୁ ଅଲସେସ୍ ଭାରି ବୁଦ୍ଧିମାନ୍ । ସେ ଜାଣି ପାରିଥିଲେ ଏଗୁଡ଼ାକ ନିର୍ଦ୍ଦୋଷ ଲୋକ ହୋଇଥିବାରୁ ସାପ୍ତାର୍ସ ଏମାନଙ୍କୁ ଏପରି ହିଂସ୍ର ଜନ୍ତୁ କରିଦେଇଅଛି । ଟିକିଏ ସୁବିଧା ପାଇଲେ ସେମାନେ ଅଲସେସଙ୍କୁ ମଧ୍ୟ ଟିକି ଟିକି କରିଦେବେ । ସେ ନିଜର ବର୍ଚ୍ଛା ଧରି ସେମାନଙ୍କୁ ମାରିବାକୁ ଧାଇଁଲେ । ଜନ୍ତୁଗୁଡ଼ାକ ଭୟ ପାଇ ପଳାଇଗଲେ ।

ନଅର ଭିତରେ ପ୍ରବେଶ କରି ଅଲସେସ୍ ଗୋଟିଏ ବିଚିତ୍ର କଥା ଦେଖିଲେ । ସେଠାରେ ମାର୍ବଲର ଗୋଟିଏ କୁଣ୍ଡ ଥିଲା । ତା ମଝିରୁ ଗୋଟିଏ ପାଣିର ଫୁଆରା ଛୁଟି ଯାଏ ଉଠୁଥିଲା । ସେଠାରୁ ସେ ପାଣି ବିନ୍ଦୁ ବିନ୍ଦୁ ହୋଇ ପଡ଼ିଲା ବେଳକୁ ଗୋଟିଏ ମଣିଷ ହୋଇ ଯାଉଥିଲା । ଦେଖୁଁ ଦେଖୁଁ ସେ ମଣିଷ ଗୋଟାଏ ସିଂହ ହୋଇ ଯାଉଥିଲା । ପୁଣି ମୁହୂର୍ତ୍ତକେ ସିଂହଟା ଗୋଟାଏ ଗଧିଆ ପାଲଟି

ସିଂହାସନରେ ଯେଉଁ ଚନ୍ଦ୍ର ଥିଲା, ତାହା ଗୋଲାପଫୁଲ ପରି କଅଁଳ ଜଣା ପଡ଼ୁଥିଲା । ସିଂହାସନ ଉପରେ ଗୋଟିଏ ଗୃନ୍ଦୁଆ ଟଙ୍ଗା ହୋଇଥିଲା । ଏହି ଗୃନ୍ଦୁଆର କାରିଗରି ଦେଖିଲେ ଆଖି ଲାଖି ରହିଥିବ ।

ସାୟାର୍ସ ଭାରି ଆଦର ଦେଖାଇ ଅଲିସେସଙ୍କ ହାତ ଧରି ତାଙ୍କୁ ସିଂହାସନ ଉପରେ ବସାଇଲା ଓ ଜଣେ ଚାକରକୁ ଡାକି କହିଲା, "ଯାଅ, ରାଜାମାନଙ୍କ ପାଇଁ ଯେଉଁ ମଦ ଅଲଗା ରଖା ଯାଇଛି, ସେଥିରୁ ଗୋଟିଏ ବୋତଲ ଆଣିବୁ ।"

ଏଇ ସୁନ୍ଦରୀ ଯୁବତୀର ଏସବୁ ଆଦର ଯତ୍ନରେ ଅଲିସେସ ଭୁଲିବାର ପାତ୍ର ନ ଥିଲେ । ମର୍କୁ୍ୟରିଙ୍କ ଠାରୁ ସେ ତାର ପ୍ରକୃତ ପରିଚୟ ପାଇଥିଲେ । ସେଥିପାଇଁ ସେ ସବୁବେଳେ ସେହି ଧଳା ଫୁଲଟିକୁ ଶୁଙ୍ଘିବାରେ ଲାଗିଥାନ୍ତି ।

ଏଥିମଧ୍ୟରେ ଚାକର ମଦ ବୋତଲ ଆଣି ପହଞ୍ଚିଲା । ଅଲିସେସ ପଚାରିଲେ, "ଏହା ଭଲ ବିଶୁଦ୍ଧ ମଦ ନା ?" ସାୟାର୍ସ ଉତ୍ତର କଲା, "ଜଗତରେ ଏଭଳି ବିଶୁଦ୍ଧ ମଦ ଅନ୍ୟ କେଉଁଠାରେ ମିଳିବ ନାହିଁ । ଅସଲ ଅଙ୍ଗୁରରୁ ତିଆରି ହୋଇଛି । କେତେକ ମଦ ଅଛି ତାକୁ ପିଇଲେ ମଣିଷର ପ୍ରକୃତି ବଦଳି ଯାଏ, କିନ୍ତୁ ଏହାକୁ ପିଇଲେ ତାର ପ୍ରକୃତ ସ୍ୱରୂପ ବାହାରିପଡ଼େ । ସେ ଯାହା ହେବାର କଥା ତାହା ହୋଇଯିବ ।"

ଚାକର ଗୋଟିଏ ଗିଲାସରେ ମଦ ପୂର୍ତ୍ତି କରିଦେଲା । ପ୍ରକୃତରେ ତାର ରଙ୍ଗ ଓ ସୁବାସରେ ଯେ କେହି ଭୁଲିଯିବେ । ଦୁଷ୍ଟ ଚାକରଟା ଏହିପରି କେତେ ଲୋକଙ୍କୁ ମଦ ଦେଇ ହିଂସ୍ର ପଶୁପକ୍ଷୀ କରିବାରେ ସାହାଯ୍ୟ କରିଥିବ । ଏପରି କରିବାରେ ତାର ଆନନ୍ଦ । ସେ ଅଲିସେସଙ୍କ ହାତକୁ ଗିଲାସଟି ବଢ଼ାଇଦେଲା ।

ଏ ମଦକୁ ସାପ୍ଲାର୍ସ ମନ୍ତ୍ର କରିଥିଲ । ଏହା ପିଇବାକୁ ଯେତିକି ମଧୁର ଏହାର ଗୁଣ ସେତିକି ମାରାତ୍ମକ । ଏହାର ଫେଣର ଗନ୍ଧ ନାକରେ ବାଜିଲାକ୍ଷଣି ମନୁଷ୍ୟର ନଣ ଦାଢ଼ି ଘୁଷୁରର ଲୋମ ହୋଇଯାଏ, କମ୍ବା ତାର ଆଙ୍ଗୁଠି ଓ ନଖ ସିଂହର ଥାବା ହୋଇଯାଏ, କମ୍ବା ତାର ମୁହଁ କୋକଶିଆଳର ମୁହଁ ହୋଇଯାଏ । ଏହାକୁ ପିଇଲେ ରକ୍ଷା ନାହିଁ । ଯେ ପିଇଲା, ସେ, ନିଶ୍ଚୟ ଗୋଟାଏ କିଛି ପଶୁ ବା ପକ୍ଷୀ ହୋଇଯିବ ।

ସାପ୍ଲାର୍ସ ହସି ହସି କହିଲ, "ମହାରାଜ, ଶୀଘ୍ର ପିଇ ଦିଅନ୍ତୁ । ଦେଖିବେ ଆପଣଙ୍କର ସବୁ ଚିନ୍ତା କୁଆଡ଼େ ଉଡ଼ିଯିବ । ଏହା ମଦର ଵଚିତ୍ରଗୁଣ ।"

ଅଲସେସ ଡାହାଣ ହାତରେ ଗିଲାସଟି ଧରିଥାନ୍ତି; ଏଣେ ବାଆଁ ହାତର ଧଳା ଫୁଲଟିକୁ ନାକ ପାଖରେ ଧରି ଶୁଙ୍ଘୁଥାନ୍ତି । ଫୁଲର ସୁଗନ୍ଧରେ ତାଙ୍କର ଗୁଣ୍ଡି ପୂରି ଯାଉଥାଏ । ସେ ହଠାତ୍ ଗିଲାସର ମଦତକ ପିଇଦେଲେ । ସାପ୍ଲାର୍ସ ଭାବିଥିଲ ଯେ ମଦତକ ପିଇଦେଲାକ୍ଷଣି ରାଜା ଗୋଟାଏ କୋକଶିଆଳ ହୋଇଯିବେ; କିନ୍ତୁ ତାର ମନ୍ତ୍ର କାମ୍ କରୁ ନ ଥିବା ଦେଖି ସେ ରାଗି ଉଠିଲା । ଏତେବେଳଯାଏ ସେ ରାଜାଙ୍କୁ ଆଦର ଦେଖାଇ ମଧୁର କଥା କହୁଥିଲା । ଏବେ ତା'ର ନିଜ ରୂପ ପ୍ରକାଶ ପାଇଲା ।

ସେ ଚିତ୍କାର କରି କହି ଉଠିଲା, "ଆରେ ହତଭାଗ୍ୟ ! ତୁ ଏତେବେଳଯାକେ ମଣିଷ ଦେହ ଧରି ରହିଛୁ କପରି ? ଆଉଥରେ ଦେଖ ।" ଏହା କହି ସେ ତାର ମନ୍ତ୍ର ବାଡ଼ିରେ ଅଲସେସଙ୍କୁ ଏକ ପାହାର ଦେଲା । ପୁଣି କହିଲା, "ତୋର ପ୍ରକୃତି ଯେଉଁ ପଶୁର ପ୍ରକୃତି ପରି ସେହି ପଶୁ ହୋଇଯାଆ । ତୁ ଯେବେ ଘୁଷୁରି ହେବାର ଯୋଗ୍ୟ, ତେବେ ଘୁଷୁରି ହୋଇ ତୋ ସାଥିଙ୍କ ପାଖେ ରହ । ସିଂହ

ହେବାର ଥିଲେ ସିଂହ ହୁଅ ; ନ ହେଲେ କୋକଶିଆଳ ହୋଇ କୁକୁଡ଼ା ଘେନିଯାଇ ଖାଅ । ମୋ ମନ ତୋ ପେଟରେ ପଡ଼ିଛି । ତୁ କେବେ ଆଉ ମଣିଷ ହୋଇ ରହିପାରିବୁ ନାହିଁ ।”

ମାତ୍ର ଅଲିସେସଙ୍କର କିଛି ପରିବର୍ତ୍ତନ ହେଲାନାହିଁ । ମର୍କ୍ୟୁରି ଦେଇଥିବା ଫୁଲର ଗୁଣ କମ୍ ନୁହେଁ । ସେ ଯେତିକ ଫୁଲଟି ଶୁଙ୍ଘୁଥାନ୍ତି, ତାଙ୍କର ବଳ ବପୁ ସେତିକ ବଢ଼ୁଥାଏ । ଗଜା ଗିଲାସଟା ତଳେ ଫିଙ୍ଗିଦେଇ ଖୋଳରୁ ଖଣ୍ଡା ବାହାର କଲେ । ସାସୁ୍ାର୍ସିର ମୁଣ୍ଡର ବାଳ ପେଣ୍ଡାଟା ଧରି ତାକୁ ଟାଣି ଟାଣି ନେଇ କହିଲେ, “ଦୁଷ୍ଟା, ପାପୀୟସୀ । ଦେଖ, ଏଇ ଖଣ୍ଡାରେ ତୋର ପ୍ରାଣ ନେବି । ତୁ ଖୁବ୍ ଅନିଷ୍ଟ କରି ସାରିଛୁ । ଆଉ ଯେପରି ଅନିଷ୍ଟ କରି ନ ପାରୁ ସେଥିପାଇଁ ତୋତେ ଜୀବନ ଦେବାକୁ ହେବ । ତୁ ଆଉ ଲୋକଙ୍କୁ ଭୁଲାଇ ଆଣି ସେମାନଙ୍କୁ ପଶୁ ପକ୍ଷୀ କରି ପାରିବୁ ନାହିଁ ।”

ଅଲିସେସଙ୍କର ଚକଚକିଆ ଖଣ୍ଡାକୁ ଦେଖି, ତାଙ୍କର ଏହିଭଳି କଥା ଶୁଣି ସାସୁ୍ାର୍ସିର ମନରେ ଭୟ ପଶିଗଲା । ସେ କରୁଣା ସ୍ୱରରେ କୁଆଡ଼େ ପଳାଇଲା । ଗୃହଜଣସାକ ମୁକବୁଝି ଅଲିସେସଙ୍କ ଉପରେ ପାଦତଳେ ପଡ଼ି କ୍ଷମା ମାଗି କହିଲେ, “ଆମ ଦୋଷ ମାର୍ଜନା କର । ଆମର ଜୀବନ ରକ୍ଷା ।”

ସାସୁ୍ାର୍ସି ବିକଳ ହୋଇ କହିଲା, “ମହାରାଜ ଅଲିସେସ, ମୁଁ ଏବେ ଆପଣଙ୍କୁ ଚିହ୍ନିଲିଣି । ଆପଣ ମୋର ପ୍ରାଣ ନିଅନ୍ତୁ ନାହିଁ । ମୋତେ କ୍ଷମା ଦିଅନ୍ତୁ । ମର୍କ୍ୟୁରି ମୋତେ କହିଥିଲେ ଯେ ଆପଣଙ୍କ ଛଡ଼ା ମୋତେ ଆଉ କେହି ଜିଣି ପାରିବେ ନାହିଁ । ତାଙ୍କ କଥା ସତ ହେଲା । ଆପଣ ମୋତେ ଜିଣିଛନ୍ତି । ଏବେ ମୋତେ କ୍ଷମା କରନ୍ତୁ । ଏଣିକି ଏ ନଅର ଆପଣଙ୍କର । ଆପଣ ଯାହା ଇଚ୍ଛା

ତାହା କରିପାରିବେ । ମୋର ଏକମାତ୍ର ପ୍ରାର୍ଥନା, ମୋର ଜୀବନ ରକ୍ଷା କରନ୍ତୁ ।"

ସାଯ୍ଯୁାର୍ସଙ୍କ ସଙ୍ଗେ ସେ ଯୁବକମାନେ ମଧ୍ୟ କାନ୍ଦି କାନ୍ଦି ସେମାନଙ୍କ ଜୀବନ ଭିକ୍ଷା କଲେ; କିନ୍ତୁ ଅଲିସେସ୍ କହିଲେ, "ତୁ ମୋର ସଙ୍ଗୀମାନଙ୍କୁ ମଣିଷ ନ କରିବା ପର୍ଯ୍ୟନ୍ତ ମୁଁ କିଛି ଶୁଣିବି ନାହିଁ । ଆଗ ସେମାନଙ୍କୁ ମଣିଷ କରି ମୋତେ ଫେରାଇ ଦେ । ତାପରେ ତୋ ଜୀବନ ରଖିବା କଥା ବିଚାର କରିବି ।"

ସାଯ୍ଯୁାର୍ସ ଅନ୍ୟ ଉପାୟ ନ ଦେଖି ରାଜାଙ୍କୁ ନଅର ପଛପଟକୁ ନେଇଗଲା । ସେଠାରେ ଗୁହାଳ ଘରେ ମୋଟ ପଚିଶଟି ଘୁଷୁରି ଥିଲେ । ସବୁ ଘୁଷୁରି ଦେଖିବାକୁ ଏକାପରି ହୋଇଥିବାରୁ କେଉଁ-ଗୁଡ଼ିକ ପ୍ରକୃତ ଘୁଷୁରି, ଆଉ କେଉଁଗୁଡ଼ିକ ତାଙ୍କ ଜାହାଜର ସାଙ୍ଗ-ସାଥି ତାହା ସେ ଜାଣି ପାରିଲେ ନାହିଁ । ଅଲିସେସ୍ ଗୁହାଳ ଘର କବାଟ ଫିଟାଇ ଦେବାରୁ ସେମାନଙ୍କ ଭିତରୁ ବାଇଶିଟି ବାହାରି ଆସି କୁଇଁ କୁଇଁ ହୋଇ ତାଙ୍କୁ ବେଢ଼ିଗଲେ । ରାଜା ଅନୁମାନ କରି-ନେଲେ ଯେ ଏଇ ବାଇଶିଟି ତାଙ୍କର ସାଙ୍ଗସାଥି ହେବେ ।

ଘୁଷୁରିଗୁଡ଼ିକ କେଉଁଠି ରହୁଥିଲେ ତାହା ଜଣା ପଡ଼ୁ ନଥିଲା । ସେମାନେ କାଦୁଅରେ ମୁହଁ ପୋତି ଆହାର ଖୋଜିବାକୁ ଲାଗିଲେ । ଜଣେ ସ୍ତ୍ରୀଲୋକ ସେମାନଙ୍କ ଆଡ଼କୁ କିଛି ଖାଦ୍ୟଦ୍ରବ୍ୟ ଫିଙ୍ଗିଦେବାରୁ ସେମାନେ ଆପଣା ଆପଣା ଭିତରେ କଳି କରି ଛଡ଼ାଛଡ଼ି ହୋଇ ଖାଇଗଲେ—ସତେ ଅବା କେତେ କାଳରୁ ସେମାନଙ୍କ ପେଟରେ କିଛି ଆହାର ପଡ଼ି ନ ଥିଲା । ଘୁଷୁରିମାନଙ୍କର ଏଭଳି ବ୍ୟବହାର ଦେଖି ରାଜାଙ୍କ ମନ ବିକଳ ହୋଇ ଉଠିଲା ।

ସେ ଧମକ ଦେଇ ସାଯ୍ଯୁାର୍ସକୁ କହିଲେ, "ଶୀଘ୍ର ଏମାନଙ୍କୁ ପୁଣି ମଣିଷ କରିଦେ, ନ ହେଲେ ତୋର ମୁଣ୍ଡ କାଟି ଶାସ୍ତି ଦେବି ।"

ସାଧୁମାର୍ସ କିଛି ମନ୍ତ୍ର ବୋଲି ତାର ବାଡ଼ିଟି ଘୁଷୁରିମାନଙ୍କ ଉପରେ ବୁଲାଇ ଆଣିଲା । ଦେଖୁଁ ଦେଖୁଁ ଅଦ୍ଭୁତ ପରିବର୍ତ୍ତନ ଘଟିଲା । ଆସ୍ତେ ଆସ୍ତେ ସେମାନଙ୍କର ରୂପ ବଦଳିଗଲା । ସେମାନେ ପୁଣି ମଣିଷ ହୋଇଗଲେ । ଏବେ ଅଲିସେସ୍ ନିଜର ବନ୍ଧୁମାନଙ୍କୁ ଚିହ୍ନିପାରି ଆନନ୍ଦିତ ହେଲେ । ମାତ୍ର ରାଜାଙ୍କର ଗୋଟାଏ ସନ୍ଦେହ ହେଲା । ମନୁଷ୍ୟ ହେଲେହେଁ ସେମାନଙ୍କର ଘୁଷୁରି ପ୍ରକୃତି ଛାଡ଼ି ନ ଥିଲା । ଗୋଟାଏ ସ୍ତ୍ରୀଲୋକ ପୁଣି କିଛି ଖାଦ୍ୟ ଫିଙ୍ଗି ଦେଲା । ସଙ୍ଗେ ସଙ୍ଗେ ବାଇଶିଜଣଯାକ ନଇଁପଡ଼ି ତାକୁ ଖାଇବାପାଇଁ ଆପଣା ଆପଣା ଭିତରେ କଳି ଲଗାଇଲେ । ମାତ୍ର ଅଳ୍ପ ସମୟ ପରେ ସେମାନେ ନିଜ କାର୍ଯ୍ୟରେ ଲଜ୍ଜିତ ହୋଇ ପରସ୍ପର ମୁହଁକୁ ଚାହିଁଲେ । ରାଜା ବୁଝି ପାରିଲେ, "ଏମାନଙ୍କର ଘୁଷୁରି ରୂପ ଯିନା ଯାଇଛି, କିନ୍ତୁ ଘୁଷୁରି ପ୍ରକୃତି ଛାଡ଼ିବାକୁ କିଛି ଦିନ ଲାଗିବ ।"

ସେମାନେ ଅଲିସେସ୍‌କୁ ବହୁତ ଧନ୍ୟବାଦ ଦେଲେ । ରାଜା କହିଲେ, "ତୁମେମାନେ ଆଉ ଥରେ ଘୁଷୁରିଶାଳରେ ପଶିବାକୁ ଯିବନାହିଁ ବୋଲି ମୋର ଆଶା ।"

ଏହି ସମୟରେ ଗଛ ଉପରୁ ଗୋଟିଏ ଅକଳ ସ୍ୱର ଶୁଣାଗଲା । ରାଜା ଦେଖିଲେ, ଯେଉଁ ଚଢ଼େଇଟି ତାଙ୍କ ପଛେ ପଛେ ଯାଉଥିଲା, ଏଇଟି ସେଇ ଚଢ଼େଇ । ଚଢ଼େଇଟି ପ୍ରକୃତରେ କୌଣସି ମନୁଷ୍ୟ, ଏହା ଜାଣିପାରି ରାଜା ସାଧୁମାର୍ସଙ୍କୁ ହୁକୁମ ଦେଲେ, "ତୋତେ ଏ ପକ୍ଷୀଟିକୁ ମଧ୍ୟ ମନୁଷ୍ୟ ରୂପ ଦେବାକୁ ହେବ ।" ସାଧୁମାର୍ସ ଅନ୍ୟ ଉପାୟ ନ ଦେଖି ମନ୍ତ୍ର ପଢ଼ି ବାଡ଼ିଟିକୁ ଗଛ ପାଖେ ବୁଲାଇ ଆଣିଲା । ଦେଖୁ ଦେଖୁଁ ପକ୍ଷୀଟି ଗୋଟିଏ ମନୁଷ୍ୟ ହୋଇଗଲା । ତାଙ୍କ ଦେହରେ ଚକଚକିଆ ନୀଳ ପୋଷାକ, ଗୋଡ଼ରେ ହଳଦିଆ ମୋଜା, ମୁଣ୍ଡରେ ନାନା ରତ୍ନ ଲାଗିଥିବା ସୁନା ମୁକୁଟ ଓ ଗଳାରେ

ଘୁନାର ହାର । ସେ ଗଛରୁ ଡେଇଁପଡ଼ି ଅଲସେସଙ୍କୁ ପ୍ରଣାମ କଲେ । କହିଲେ, "ମୁଁ ହେଉଛି ରଜା ପିକସ । ଭଲ ପୋଷାକ, ଭଲ ଅଳଙ୍କାର ପିନ୍ଧି ମୁଁ ଭାରି ଗର୍ବ କରୁଥିଲି । ଏ ରାକ୍ଷସୀ ମୋତେ ପକ୍ଷୀଟିଏ କରି ରଖିଥିଲା ।"

ରଜା ପିକସ ଅଲସେସଙ୍କଠାରୁ ବିଦାୟ ନେଇ ନିଜ ରାଜ୍ୟକୁ ଚାଲିଗଲେ । କିନ୍ତୁ ସେଦିନଠୁ ତାଙ୍କର ସ୍ୱଭାବ ଏକବାରେ ବଦଳିଗଲା । ସେ ପୋଷାକ ଅଳଙ୍କାରର ଗର୍ବ ଛାଡ଼ି ପ୍ରକୃତରେ ପ୍ରଜାଙ୍କର ଉପକାର କରିବାରେ ଲାଗିପଡ଼ିଲେ । ପ୍ରଜାମାନଙ୍କ ସୁଖରେ ସୁଖୀ ଓ ଦୁଃଖରେ ଦୁଃଖୀ ହୋଇ ସେ ରାଜ୍ୟ ଶାସନ କଲେ । ତାଙ୍କର ଗର୍ବ ଉଭେଇ ଗଲା ।

ସେତେବେଳକୁ ନଅରରେ ଆହୁରି ଅନେକ ସିଂହ, ବାଘ ଓ ଗଧିଆ ଥିଲେ; କିନ୍ତୁ ସେମାନଙ୍କୁ ପୁଣି ମଣିଷ କରିବାକୁ ଅଲସେସଙ୍କର ଇଚ୍ଛା ନ ଥିଲା । ନିଜ ନିଜ ମନ୍ଦ ପ୍ରକୃତିର ଫଳ ଭୋଗିବା ପାଇଁ ସେମାନଙ୍କୁ ସେ ଦ୍ୱୀପରେ ଛାଡ଼ିଦେଇ ଗଲେ ।

ରଜା ଜାହାଜରୁ ତାଙ୍କର ଅବଶିଷ୍ଟ ଲୋକଙ୍କୁ ସେହି ନଅରକୁ ଡକାଇ ଆଣିଲେ । ନଅରରେ କୌଣସି ଜିନିଷର ଅଭାବ ନଥିଲା । ସେମାନେ କେତେ ଦିନ ପର୍ଯ୍ୟନ୍ତ ନଅରରେ ସୁଖରେ ରହିଲେ । ଏଥିପୂର୍ବରୁ ସେମାନେ ଅନେକ ଦୁଃଖ କଷ୍ଟ ସହି କ୍ଳାନ୍ତ ହୋଇପଡ଼ିଥିଲେ । ଏବେ ସେମାନଙ୍କର କ୍ଳାନ୍ତି ଦୂର ହୋଇଗଲା; ମନ ପୁଣି ପ୍ରଫୁଲ୍ଲ ହେଲା ।

ଦିନେ ଅଲସେସ ନିଜର ଲୋକମାନଙ୍କୁ ସଙ୍ଗରେ ନେଇ ପୁଣି ଜାହାଜରେ ବସି ନିଜ ରାଜ୍ୟକୁ ଫେରିଗଲେ ।



ସାମ୍ଭାର୍ସ କିଛି ମନ୍ତ୍ର ବୋଲି ତାର ବାଡ଼ିଟି ଘୁଷୁରିମାନଙ୍କ ଉପରେ ବୁଲାଇ ଆଣିଲା । ବୁଝୁଁ ବୁଝୁଁ ଅଦ୍ଭୁତ ପରିବର୍ତ୍ତନ ଘଟିଲା । ଅସ୍ତେ ଅସ୍ତେ ସେମାନଙ୍କର ରୂପ ବଦଳିଗଲା । ସେମାନେ ପୁଣି ମଣିଷ ହୋଇଗଲେ । ଏବେ ଅଲିସେସ୍ ନିଜର ବନ୍ଧୁମାନଙ୍କୁ ଚିହ୍ନିପାରି ଆନନ୍ଦିତ ହେଲେ । ମାତ୍ର ରାଜାଙ୍କର ଗୋଟାଏ ସନ୍ଦେହ ହେଲା । ମନୁଷ୍ୟ ହେଲେହେଁ ସେମାନଙ୍କର ଘୁଷୁରି ପ୍ରକୃତି ଛୁଡ଼ି ନ ଥିଲା । ଗୋଟାଏ ସ୍ତ୍ରୀଲୋକ ପୁଣି କିଛି ଖାଦ୍ୟ ଫିଙ୍ଗି ଦେଲା । ସଙ୍ଗେ ସଙ୍ଗେ ବାଇଶିଜଣଯାକ ନଇଁପଡ଼ି ତାକୁ ଖାଇବାପାଇଁ ଆପଣା ଆପଣା ଭିତରେ କଳି ଲଗାଇଲେ । ମାତ୍ର ଅଳ୍ପ ସମୟ ପରେ ସେମାନେ ନିଜ କାର୍ଯ୍ୟରେ ଲଜ୍ଜିତ ହୋଇ ପରସ୍ପର ମୁହଁକୁ ଚାହିଁଲେ । ରାଜା ବୁଝି ପାରିଲେ, "ଏମାନଙ୍କର ଘୁଷୁରି ରୂପ ଯିବା ଯାଇଛି, କିନ୍ତୁ ଘୁଷୁରି ପ୍ରକୃତି ଛାଡ଼ିବାକୁ କିଛି ଦିନ ଲାଗିବ ।"

ସେମାନେ ଅଲିସେସ୍‌ଙ୍କୁ ବହୁତ ଧନ୍ୟବାଦ ଦେଲେ । ରାଜା କହିଲେ, "ତୁମେମାନେ ଆଉ ଥରେ ଘୁଷୁରିଶାଳରେ ପଶିବାକୁ ଯିବନାହିଁ ବୋଲି ମୋର ଆଶା ।"

ଏହି ସମୟରେ ଗଛ ଉପରୁ ଗୋଟିଏ ବିକଳ ସ୍ୱର ଶୁଣାଗଲା । ରାଜା ଦେଖିଲେ, ଯେଉଁ ଚଢ଼େଇଟି ତାଙ୍କ ପଛେ ପଛେ ଧାଇଁ ଆସୁଥିଲା, ଏଇଟି ସେଇ ଚଢ଼େଇ । ଚଢ଼େଇଟି ପ୍ରକୃତରେ କୌଣସି ମନୁଷ୍ୟ, ଏହା ଜାଣିପାରି ରାଜା ସାମ୍ଭାର୍ସକୁ ହୁକୁମ ଦେଲେ, "ତୋତେ ଏ ପକ୍ଷୀଟିକୁ ମଧ୍ୟ ମନୁଷ୍ୟ ରୂପ ଦେବାକୁ ହେବ ।" ସାମ୍ଭାର୍ସ ଅନ୍ୟ ଉପାୟ ନ ଦେଖି ମନ୍ତ୍ର ପଢ଼ି ବାଡ଼ିଟିକୁ ଗଛ ପାଖେ ବୁଲାଇ ଆଣିଲା । ବୁଝୁ ବୁଝୁଁ ପକ୍ଷୀଟି ଗୋଟିଏ ମନୁଷ୍ୟ ହୋଇଗଲା । ତାଙ୍କ ଦେହରେ ଚକଚକିଆ ନାଲି ପୋଷାକ, ଗୋଡ଼ରେ ହଳଦିଆ ମୋଜା, ମୁଣ୍ଡରେ ନାନା ରତ୍ନ ଲାଗିଥିବା ସୁନା ମୁକୁଟ ଓ ଗଳାରେ

ସୁନାର ହାର । ସେ ଗଛରୁ ତେଇଁପଡ଼ି ଅଲସେସଙ୍କୁ ପ୍ରଣାମ କଲେ । କହିଲେ, "ମୁଁ ହେଉଛି ରାଜା ପିକସ । ଭଲ ପୋଷାକ, ଭଲ ଅଳଙ୍କାର ପିନ୍ଧି ମୁଁ ଭାରି ଗର୍ବ କରୁଥିଲି । ଏ ରାକ୍ଷସୀ ମୋତେ ପକ୍ଷୀଟିଏ କରି ରଖିଥିଲା ।"

ରାଜା ପିକସ ଅଲସେସଙ୍କଠାରୁ ବିଦାୟ ନେଇ ନିଜ ରାଜ୍ୟକୁ ଚାଲିଗଲେ । କିନ୍ତୁ ସେତିକି ତାଙ୍କର ସ୍ୱଭାବ ଏକାବାରେ ବଦଳିଗଲା । ସେ ପୋଷାକ ଅଳଙ୍କାରର ଗର୍ବ ଛାଡ଼ି ପ୍ରକୃତରେ ପ୍ରଜାଙ୍କର ଉପକାର କରିବାରେ ଲାଗିପଡ଼ିଲେ । ପ୍ରଜାମାନଙ୍କ ସୁଖରେ ସୁଖୀ ଓ ଦୁଃଖରେ ଦୁଃଖୀ ହୋଇ ସେ ରାଜ୍ୟ ଶାସନ କଲେ । ତାଙ୍କର ଗର୍ବ ଉଭେଇ ଗଲା ।

ସେତେବେଳକୁ ନଅରରେ ଆହୁରି ଅନେକ ସିଂହ, ବାଘ ଓ ରଧିଆ ଥିଲେ; କିନ୍ତୁ ସେମାନଙ୍କୁ ପୁଣି ମଣିଷ କରିବାକୁ ଅଲସେସଙ୍କର ଇଚ୍ଛା ନ ଥିଲା । ନିଜ ନିଜ ମନ୍ଦ ପ୍ରକୃତିର ଫଳ ଭୋଗିବା ପାଇଁ ସେମାନଙ୍କୁ ସେହି ଦ୍ୱୀପରେ ଛାଡ଼ିଦେଇ ଚଳେ ।

ରାଜା ଜାହାଜରୁ ତାଙ୍କର ଅବଶିଷ୍ଟ ଲୋକଙ୍କୁ ସେହି ନଅରକୁ ଡକାଇ ଆଣିଲେ । ନଅରରେ କୌଣସି ଜିନିଷର ଅଭାବ ନଥିଲା । ସେମାନେ କେତେ ଦିନ ପର୍ଯ୍ୟନ୍ତ ନଅରରେ ସୁଖରେ ରହିଲେ । ଏଥିପୂର୍ବରୁ ସେମାନେ ଅନେକ ଦୁଃଖ କଷ୍ଟ ସହି କ୍ଲାନ୍ତ ହୋଇପଡ଼ିଥିଲେ । ଏବେ ସେମାନଙ୍କର କ୍ଲାନ୍ତି ଦୂର ହୋଇଗଲା; ମନ ପୁଣି ପ୍ରଫୁଲ୍ଲ ହେଲା ।

ତାପରେ ଅଲସେସ ନିଜର ଲୋକମାନଙ୍କୁ ସଙ୍ଗରେ ନେଇ ପୁଣି ଜାହାଜରେ ବସି ନିଜ ରାଜ୍ୟକୁ ଫେରିଗଲେ ।



# ଜାସନ ଓ ସୁନାର ଲୋମ

ଅତି ପୂର୍ବକାଳରେ ଜଣେ ଗୁରୁ ଥିଲେ । ସେ ନାନା ବିଦ୍ୟାରେ ପଣ୍ଡିତ ଥିଲେ । ତେଣୁ ଅନେକ ଲୋକ ନିଜ ନିଜ ପିଲାଙ୍କୁ ତାଙ୍କ ପାଖକୁ ପାଠ ପଢ଼ିବାକୁ ପଠାଉଥିଲେ । ତାଙ୍କ ଭଳି ମହାପଣ୍ଡିତ ସେ କାଳରେ ଆଉ କେହି ନଥିଲେ; କିନ୍ତୁ ତାଙ୍କର ରୂପଟି ଥିଲା ଅଦ୍ଭୁତ । ତାଙ୍କର ବେକଠାରୁ ଉପର ଅଂଶ ଥିଲା ମଣିଷର ମୁଣ୍ଡ ପରି, ମାତ୍ର ଦେହଟି ଥିଲା ଠିକ୍ ଗୋଟିଏ ଘୋଡ଼ାର ଦେହ ପରି । ଘୋଡ଼ା ପରି ତାଙ୍କର ଚାରିଗୋଟି ଗୋଡ଼ ମଧ୍ୟ ଥିଲା । ଏହି ଗୁରୁଙ୍କର ନାମ ଚିରନ ।

ଏହି ଚିରନଙ୍କ ଶିଷ୍ୟମାନଙ୍କ ଭିତରେ ଜାସନ ବୋଲି ଗୋଟିଏ ପିଲା ଥିଲା । ସେ ଗୁରୁଙ୍କ ପାଖେ ରହି ତାଙ୍କର ସେବା କରି ନାନା ବିଦ୍ୟା ଶିକ୍ଷା କଲା । ଚିରନ ଅନ୍ୟ ପିଲାଙ୍କ ସାଥିରେ ତାକୁ ମଧ୍ୟ ଆୟୁର୍ବେଦ, ଧନୁର୍ବେଦ, ଯୁଦ୍ଧବିଦ୍ୟା, ସଙ୍ଗୀତ ବିଦ୍ୟା ପ୍ରଭୃତି ଶିକ୍ଷା ଦେଲେ । ଖଣ୍ଡା ଓ ଢାଲ ବ୍ୟବହାର କରିବାରେ ଜାସନ ଅନ୍ୟ ଛାତ୍ରମାନଙ୍କୁ ବଳିଗଲା । ଗୁରୁ ତା ଉପରେ ଖୁବ୍ ସନ୍ତୁଷ୍ଟ ହେଲେ । ସେ ଗୁରୁଙ୍କ ପରି ନାନା ବିଦ୍ୟାରେ ଜ୍ଞାନୀ ହୋଇଉଠିଲା ।

ଜାସନ ପ୍ରକୃତରେ ଜଣେ ରାଜାଙ୍କର ପୁଅ । ସେହି ରାଜାଙ୍କର ନାମ ଥିଲା ଏଇସନ । ଅନେକ ଦିନ ପୂର୍ବେ ପେଲିଅସ ବୋଲି

ଜଣେ ଲୋକ ଏଇସନଙ୍କୁ ରାଜଗାଦିରୁ ତଡ଼ିଦେଇ ନିଜେ ରାଜା ହୋଇ ବସିଥିଲା । ରାଜ୍ୟରୁ ତଡ଼ା ଖାଇ ଏଇସନ ଅନେକ ଦିନ ଏଣେ ତେଣେ ବୁଲି ଶେଷରେ ମଲେ । ପେଲିଅସ ନିଶ୍ଚିନ୍ତରେ ସିଂହାସନରେ ବସି ରାଜ୍ୟ ଭୋଗ କଲା । ଏଣେ ଜାସନ ଚିରନଙ୍କ ପାଖରେ ପାଠ ପଢ଼ୁଥାନ୍ତି ।

କ୍ରମେ ଜାସନ ଯୁବକ ହେଲେ । ତାଙ୍କର ପାଠପଢ଼ା ଶେଷ ହେଲା । ସେ ଜାଣିପାରିଲେ, ପେଲିଅସ ତାଙ୍କ ବାପାଙ୍କୁ ତଡ଼ି ରାଜ୍ୟ ଅଧିକାର କରି ବସିଛି । ବାପାଙ୍କ ଅନ୍ତେ ସେ ରାଜା ହେବାର କଥା । ମାତ୍ର କିପରି ସେ ନିଜ ରାଜ୍ୟ ଫେରିପାଇବେ ? ପେଲିଅସ କଅଣ ତାଙ୍କୁ ସହଜରେ ରାଜ୍ୟ ଛାଡ଼ିଦେବ ?

କିପରି ପେଲିଅସଙ୍କୁ ସିଂହାସନରୁ ତଡ଼ିବେ ଓ ନିଜେ ରାଜା ହେବେ ଏହାହିଁ ତାଙ୍କର ପ୍ରଧାନ ଚିନ୍ତା ହେଲା । ଯାହାହେଉ, ବୟସ ହେଲାଣି, ପାଠ ପଢ଼ା ମଧ୍ୟ ଶେଷ । ତେବେ ସେ ଏଣିକି ନିଜ ଭାଗ୍ୟ ସନ୍ଧାନ ନକରିବେ କାହିଁକି ?

ଏହିପରି ଭାବି ଦିନେ ଜାସନ ଗୁରୁଙ୍କ ଆଶ୍ରମରୁ ବାହାରିଗଲେ । ତାଙ୍କ କାନ୍ଧରେ ଗୋଟିଏ ବାଘ ଛାଲ ଓ ଦୁଇ ହାତରେ ଦୁଇଟି ବର୍ଚ୍ଛା ଥିଲା । ବାଘ ଛାଲରେ ସେ ନିଜକୁ ଖରା ବର୍ଷାରୁ ରକ୍ଷା କରିପାରିବେ ଓ ବର୍ଚ୍ଛାରେ ଶତ୍ରୁକୁ ମାରି ପାରିବେ । ଆଉ କଅଣ ଦରକାର ? ଏହାଛଡ଼ା ତାଙ୍କର ଆଉ ଗୋଟିଏ ଜିନିଷ ଥିଲା ପାଦରେ ଥିଲା ହଳେ ଜୋତା । ଏ ଯୋଡ଼ିକ ତାଙ୍କ ବାପାଙ୍କର ଥିଲା । ଜୋତା ଉପରେ ଅତି ସୁନ୍ଦର କାରୁକାର୍ଯ୍ୟ ହୋଇଥିଲା । ଜୋତାର ଫିତା ଥିଲା ସୁନାରେ ତିଆରି । ଜାସନ ଏହି ଜୋତା ପିନ୍ଧି ବୁଲୁଥାନ୍ତି । ଲୋକେ ତାଙ୍କ ଚେହେରା ଆଉ ଏ ଜୋତା ଦେଖି ଆଶ୍ଚର୍ଯ୍ୟ ହୋଇଯାଉଥିଲେ । ଭାବୁଥିଲେ ଏ ଙ୍କାର ଜଣକ କିଏ ?

ଜାସନ କାହାକୁ ଖାତିର ନ କରି ଚାଲିଥାନ୍ତି । କେତେ କୋଶ ବାଟ ଯିବା ପରେ ଗୋଟାଏ ନଈ ପଡ଼ିଲା । ସେଥିରେ ପ୍ରବଳ ସୁଅ ଚାଲିଥାଏ । କେତେ ଗଛ, ଜୀବଜନ୍ତୁ ଭାସି ଯାଉଥାନ୍ତି । ଗହୀର ପାଣି । ନଦୀକୁ ପାର ହୋଇ ଯିବେ କପରି ? ପାଖରେ ଡଙ୍ଗାର ଦେଖା ନାହିଁ । ପୁଣି ଏ ଭଳି ସୁଅରେ ଡଙ୍ଗା ଯାଆନ୍ତା ବା କପରି ? ପହଁରି ଯିବାକୁ ଜାସନଙ୍କର ସାହସ ପାଇଲା ନାହିଁ ।

ସେ ନଈ କୂଳରେ ଛିଡ଼ା ହୋଇ କଅଣ କରିବେ ଭାବୁଥାନ୍ତି ଏଇ ସମୟରେ ପଛଆଡ଼ୁ କିଏ ଜଣେ କହିଲା, "ଟୋକାଟା କପରି ନଈ ପାରହେବ ବୋଲି ଭାବ ହେଉଛି । ଜୋତା ଯୋଡ଼ାକ ଓଦା ହୋଇଯିବ ବୋଲି ଡରୁଛି ପରା ! ତାର ଚରିଗୋଡ଼ିଆ ଗୁରୁ କଅଣ ଏଠି ଅଛି ଯେ, ତାକୁ ପିଠିରେ ବସାଇ ଆର କୂଳକୁ ନେଇଯିବ ?"

ଜାସନ ଅଶ୍ଚର୍ଯ୍ୟରେ ପଛକୁ ବୁଲିପଡ଼ି ଦେଖନ୍ତି, ତାଙ୍କ ପାଖରେ ଗୋଟିଏ ବୁଢ଼ୀ ଛିଡ଼ା ହୋଇଛି । ସେଇ ବୁଢ଼ୀ ଯେ ଏହା କହୁଥିଲା, ଏଥିରେ ସନ୍ଦେହ ନାହିଁ । ବୁଢ଼ୀ ଗୋଟିଏ ବାଡ଼ି ଉପରେ ଭରା ଦେଇ ଠିଆ ହୋଇଥିଲା । ବାଡ଼ି ଅଗରେ ଗୋଟିଏ କୋଇଲିର ଛବି । ବୁଢ଼ୀର ଚମ ଲୋଚାକୋଚା; କିନ୍ତୁ ଆଖି ଦୁଇଟା ଖୁବ୍ ଉଜ୍ଜ୍ୱଳ । ବୁଢ଼ୀ ଅନ୍ୟ ହାତରେ ଗୋଟିଏ ପାଚିଲା ଡାଳିମ୍ବ ଧରିଥିଲା । ସେ ଦିନେ ଡାଳିମ୍ବ ଫଳେ ନାହିଁ । ବୁଢ଼ୀ ଏହାକୁ ପାଇଲା କାହୁଁ ? ବୁଢ଼ୀ ମାଙ୍କଲୁ ଲାଗି ଗୋଟାଏ ବଡ଼ ମୟୂର ଥିଲା । ଏ' ବଟେଇ ବୁଢ଼ୀକୁ ଦେଖି ଓ ତାର କଥା ଶୁଣି ଜାସନଙ୍କ ମନରେ ସନ୍ଦେହ ହେଲା ।

ବୁଢ଼ୀ ପୁଣି ପଚାରିଲା, "ଜାସନ, ତୁ କୁଆଡ଼େ ଯାଉଛୁ ?"

ଏହା ଶୁଣିଲା ମାତ୍ରେ ଜାସନର ସନ୍ଦେହ ଆହୁରି ବଢ଼ିଗଲା । ବୁଢ଼ୀ ତାକୁ ଚିହ୍ନିଲା କପରି ? ତା ନାଁ ଜାସନ, ସେ ଚରିଗୋଡ଼ିଆ ଶିରନ ପାଖେ ପଢ଼ୁଥିଲା, ଏସବୁ ବୁଢ଼ୀ ଜାଣିଲା କପରି ?

ସେ ବୁଢ଼ୀର ଉଜ୍ଜ୍ୱଳ ଆଖି ଯୋଡ଼ାକୁ ପୁଣି ଭଲକରି ଦେଖିଲା । ମାତ୍ର ଚିହ୍ନିପାରିଲା ନାହିଁ । ସେ ଭାବିଲା—"ବୁଢ଼ୀ ଯିଏ ହେଉ ପଛକେ ତାକୁ ଅତୀତ ଭବିଷ୍ୟ ଜଣା ।"

ଜାସନ ଉତ୍ତର କଲା, "ମୁଁ ଆୟୋଲକସ ରାଜ୍ୟକୁ ଯାଉଛି । ସେଠି ପେଲିଅସ ରାଜା ହୋଇ ବସିଛି । ସେ ରାଜ୍ୟ ଥିଲା ମୋ ବାପାଙ୍କର । ମୁଁ ଯାଉଛି, ତାକୁ ତଡ଼ି ବାପାଙ୍କ ରାଜ୍ୟରେ ପୁଣି ରାଜା ହେବ ।"

ବୁଢ଼ୀ କହିଲା, "ଏଥିପାଇଁ ଏତେ ତରତର ହେଉଛୁ କାହିଁକି ? ମତେ ତୋ ପିଠିରେ ବସାଇ ନଈ ଆର ପାରିକି ନେଇଯାଆ । ତୋର ନଈ ପାରି ହେବା ଯେମିତି ଦରକାର ମୁଁ ଆଉ ଏ ମଧୁର ମଧ୍ୟ ନଈ ପାରି ହେବା ସେମିତି ଦରକାର । ମତେ ନେଇଯା, ବାପ !"

ଜାସନ ଉତ୍ତର କଲା, "ମୁଁ ତୁମକୁ ନେଇ ନଈ ପାରି ହୋଇ ପାରିଲେ ଆନନ୍ଦରେ ତାହା କରନ୍ତି; କିନ୍ତୁ ଦେଖ, ନଈର ସୁଅ କେଡ଼େ ପ୍ରବଳ । ଏଥିରେ ପଶି ଯିବାକୁ କିଏ ସାହସ କରିବ ? ତୁମକୁ ନେଇ ଯାଉ ଯାଉ ଗୋଡ଼ ଖସିଗଲେ ଦୁହେଁଯାକ ମରିବା । ଆଉ ଗୋଟିଏ କଥା, ତୁମକୁ ପିଠିରେ ବସାଇ ନେବାପାଇଁ ମୋର ବଳ ନାହିଁ ।"

ବୁଢ଼ୀ କହିଉଠିଲା, "ଏଇ ସାମାନ୍ୟ କାମ ପାଇଁ ତ ତୋର ବଳ ନାହିଁ, ତୁ କିପରି ପେଲିଅସକୁ ସିଂହାସନରୁ ତଡ଼ିବୁ ବୋଲି ସାହସ କରୁଛୁ ? ଆଉ ଗୋଟିଏ କଥା—ମୋ ଭଳି ଗୋଟାଏ ବୁଢ଼ୀକୁ ଯେ ଟିକିଏ ସାହାଯ୍ୟ କରିପାରୁ ନାହିଁ, ସେ କଅଣ ରାଜା ହେବାକୁ ଯୋଗ୍ୟ ? ରାଜାମାନଙ୍କର କାମ ହେଲା, ବିପଦରେ ପଡ଼ିଥିବା ଲୋକଙ୍କୁ ସାହାଯ୍ୟ କରିବା । ତୁ ଯେବେ ମୋତେ ଟିକିଏ ସାହାଯ୍ୟ କରିପାରିବୁ ନାହିଁ, ତୁ କି ରାଜା ହେବୁ ?"

ବୁଢ଼ୀର କଥାଗୁଡ଼ାକ ଜାସନଙ୍କୁ ବାଧିଲା । ବୁଢ଼ୀ ଯାହା କହିଲା, ତା ମିଛ ନୁହେଁ । ଚିରନ ତାଙ୍କୁ କେତେ ଥର ଶିଖାଇଛନ୍ତି —ଦୁର୍ବଳଙ୍କୁ ସାହାଯ୍ୟ କରିବା ହେଉଛି ସବଳର କର୍ତ୍ତବ୍ୟ । ଆହୁରି ମଧ୍ୟ ତାଙ୍କର ଶିକ୍ଷା ହେଉଛି – ଯୁବତୀ ସ୍ତ୍ରୀ ମାନେ ତୁମର ଭଉଣୀ ବୋଲି ମନେକରିବ; ବୁଡ଼ୀ ମାନେ ତୁମର ମାଆ ବୋଲି ବିଚାରିବ । ସେ ବୁଢ଼ୀ କଥାରେ ଲଜ୍ଜିତ ହୋଇ କହିଲା, "ମାଆ, ତୁମ କଥା ସତ । ଆସ, ମୋ ପିଠିରେ ଲାଡ ହୋଇପଡ଼ । ମୁଁ ତୁମକୁ ନେଇ ନଦୀ-ପାରି ହେବାକୁ ଚେଷ୍ଟା କରିବି ।" ବୁଢ଼ୀ କହିଲା, "ପୁଅ, ଈଶ୍ୱର ତୋର ମଙ୍ଗଳ କରିବେ । ତୁ କିଛି ଭୟ କରନା । ଆମେ ନଈ ପାର ହୋଇଯିବା ।"

ବୁଢ଼ୀ ଜାସନଙ୍କର ବେକକୁ ଧରି ତାଙ୍କ ପିଠିରେ ଲାଡ ହେଲା । ମୟୂର ଉଡ଼ିଯାଇ ବୁଢ଼ୀ କାନ୍ଧରେ ବସିଲା । ଜାସନ ଦୁଇ ହାତରେ ଗୋଟିଏ ଲେଖାଏଁ ବର୍ଚ୍ଛା ଧରି ନଈରେ ପଶି ଚାଲିଲେ । ନଈ ତଳଟା ପଥୁରିଆ । ତା ଉପରେ ଜାସନ ଧୀରେ ଧୀରେ ଚାଲୁଥାନ୍ତି । ସୁଅରେ ପାଦ ଟଳମଳ ହେଉଥାଏ । କ୍ରମେ ପାଣି ବେଶୀ ହେଲା । ବର୍ଚ୍ଛା ଦୁଇଟି ଉପରେ ଭର ଦେଇ ଯିବାକୁ ହେଉଥାଏ । ନଈ ମଝିରେ ହେଲାବେଳକୁ ଦେଖାଗଲା, କେତେ ଗଛ ସୁଅରେ ଉପୁଡ଼ି ଭାସି ଯାଉଛି । ଗୋଟାଏ ଗଛ ଆସି ତାଙ୍କ ପାଖରେ ପହଞ୍ଚିଗଲା । ଜାସନ ଭାବିଲେ, ଗଛ ତାଙ୍କ ଦେହରେ ବାଜିଲେ ସେ ତା ସାଥିରେ ଭାସିଯିବେ । ମାତ୍ର ଦୈବଯୋଗକୁ ତାହା ହେଲାନାହିଁ । କିନ୍ତୁ ତାଙ୍କ ଗୋଡ଼ ଦୁଇଟା ପଥର ସନ୍ଧିରେ ଲାଗିଗଲା । ସେ ଗୋଡ଼ ବାହାର କରି ଆଣିବାକୁ ଟାଣି ଓଟାରି ହେଲେ । ଗୋଡ଼ ଦୁଇଟା ବାହାରିଆସିଲା; କିନ୍ତୁ ଗୋଟାଏ ଗୋଡ଼ର ଜୋତା ପଥର କୁଆଡ଼େ ଭାସିଗଲା । ସେ ପାଟିକଲେ, "ଓଃ, ଗଲା, ଗଲା !"

ବୁଢ଼ୀ ପଚାରିଲା, "ବାପ, ଏମିତି କାହିଁକି ହେଉଛୁ ?"

ଜାସନ ଉତ୍ତର କଲେ, "ମୋର ଗୋଟେ ଜୋତା କୂଆଡ଼େ ଖସିଗଲା । ଏବେ ଗୋଟେ ଜୋତା ପିନ୍ଧି ପେଲିଅସ ପାଖକୁ ଗଲେ ଲୋକେ ଦେଖି କଅଣ କହିବେ ?"

ଏହା ଶୁଣି ବୁଢ଼ୀ କହିଲା, "ସେଥିପାଇଁ ଚିନ୍ତା କରୁଛୁ କାହିଁକି ? ଜୋତା ଗୋଟେ ହଜିଯିବା ତୋର ଭାଗ୍ୟର କଥା । ଏବେ ମୁଁ ତୋତେ ଠିକ୍ ଚିହ୍ନିଲି । ତୋର କଥା ମତେ ଶାଗୁଆନ ଗଛ କହୁଥିଲା ।"

ବୁଢ଼ୀ ଯାହା କହିଲା ସେ କଥା ଭାବିବା ପାଇଁ ଜାସନଙ୍କର ବେଳ ନଥିଲା । ସେତେବେଳକୁ ମଥୁରିଆ ଅାବଡ଼ାଖାବଡ଼ା ନଈରେ ଯିବାକୁ ତାଙ୍କୁ ବଡ଼ କଷ୍ଟ ହେଉଥାଏ । ଏଣେ ନଈର ଆର କୂଳ ପାଖ ହୋଇ ଆସୁଥାଏ । ଏତିକିବେଳକୁ ତାଙ୍କୁ ଜଣାପଡ଼ିଲା, ସତେ ଯେପରି ତାଙ୍କର ବଳ ଦଶଗୁଣ ବଢ଼ିଯାଇଛି । ଏହା କଅଣ ବୁଢ଼ୀକୁ ପିଠିରେ ପକାଇ ଆଣିବାର ଫଳ ?

ଆର କୂଳରେ ପହଞ୍ଚି ଜାସନ ଅତି ଧୀରେ ବୁଢ଼ୀକୁ ଘାସ ଉପରେ ଓହ୍ଲାଇଦେଲେ । ବୁଢ଼ୀ ତାଙ୍କୁ ଆଶୀର୍ବାଦ କରି କହିଲା, "ତୁ ଏତେ କଷ୍ଟ କରି ମତେ ଆଣିଲୁ । ଈଶ୍ୱର ତୋର ମଙ୍ଗଳ କରିବେ । ଗୋଟେ ଜୋତା ହଜିଗଲା ବୋଲି ମନ ଦୁଃଖ କରିବୁ ନାହିଁ । ତୋର ଖାଲି ଗୋଡ଼ଟା ଦେଖି ପେଲିଅସ ଭୟରେ କମ୍ପି ଉଠିବ । ଏହାଠାରୁ ସୁନ୍ଦର ଜୋତା ପିନ୍ଧିବାକୁ ତୋ ଭାଗ୍ୟରେ ଲେଖାଅଛି । ଏବେ ତୋ ବାଟରେ ଯାଆ । ମୁଁ ଆଶୀର୍ବାଦ କରୁଛି । ତୁ ଯେତେବେଳେ ରଜା ହୋଇ ସିଂହାସନରେ ବସିବୁ ସେତେବେଳେ ଏ ବୁଢ଼ୀଟା କଥା ଟିକିଏ ମନେପକାଉଥିବୁ ।"

ବୁଢ଼ୀ ହସି ହସି ଏତିକି କହି ଷ୍ଟେଟେଇ ଷ୍ଟେଟେଇ ଚାଲିଗଲା । ବୁଢ଼ୀ ପଛେ ପଛେ ତା ମୟୂରଟି ପୁଚ୍ଛ ମେଲାଇ ଚାଲିଥାଏ । ବୁଢ଼ୀର ଆଖିର ଜ୍ୟୋତି, କଥା କହିବାର ଢଙ୍ଗ, ତାର ହସ, ଏ ସବୁ ଜାସନଙ୍କୁ ଆଶ୍ଚର୍ଯ୍ୟ ଲାଗିଲା ।

କେତେଦିନ ଚାଲି ଚାଲି ଜାସନ ଆପୁଲକସ ରାଜ୍ୟରେ ପହଞ୍ଚିଲେ । ସେ ସହରରେ ପଶିଲା କ୍ଷଣି ଲୋକେ ତାଙ୍କୁ ଦେଖି କୁହାକୋହି ହେଲେ, "ଦେଖିଲ, ଏତେ ଦିନ ପରେ ସେଇ ଲୋକ ଆସିଛି । ତା ପାଦରେ ପଟେ ଜୋତା ଅଛି ପରା ! ରଜା ତାଙ୍କୁ ଦେଖିଲେ କଅଣ କହିବେ ?"

ଜାସନ ଲୋକମାନଙ୍କର ଏଭଳି କଥାବାର୍ତ୍ତା ଶୁଣିଲେ, ମାତ୍ର ଏଥିରୁ କିଛି ବୁଝି ପାରିଲେ ନାହିଁ ।

ଜାସନ ସହରର ଲୋକ ଗହଳି ପାର ହୋଇ ସମୁଦ୍ର କୂଳରେ ପହଞ୍ଚିଲେ । ସେଠାରେ ବି ଅନେକ ଲୋକ ଜମିଥିଲେ । ସେତେବେଳକୁ ରଜା ପେଲିଅସ ବେଦୀ ଉପରେ ଗୋଟାଏ କାଳିଆ ଷଣ୍ଢକୁ ବଳି ଦେବାକୁ ଯାଉଥିଲେ । ପୁରୋହିତ ମନ୍ତ୍ର ପଢ଼ିବା ପରେ ରଜା ଗୋଟିଏ ଛୁରୀ ଧରି ଷଣ୍ଢକୁ ମାରିବାକୁ ଯାଉଛନ୍ତି, ସେତିକିବେଳେ ତାଙ୍କର ଆଖି ପଡ଼ିଲା ଜାସନଙ୍କ ଉପରେ । ସେ ତାଙ୍କ ମୁଣ୍ଡଠାରୁ ପାଦ ଯାଏ ଚାହିଁଗଲେ । ଗୋଟାଏ ପାଦରେ ଜୋତା ନ ଥିବାର ଦେଖି ସେ ଆଶ୍ଚର୍ଯ୍ୟ ହୋଇଗଲେ । ସେ ପଚାରିଲେ, "ଯୁବକ, ତୁମେ କିଏ ? କାହିଁକି ଆସିଛ ?" ପାଖ ଲୋକମାନେ କହିବାକୁ ଲାଗିଲେ, "ଏବେ ସେଇ ଲୋକ ଆସିଛି । ଦେଖନ୍ତୁ, ତା ପାଦରେ ପଟେ ଜୋତା । ଯେଉଁ ଭବିଷ୍ୟଦ୍‌ବାଣୀ ଶୁଣିଥିଲେ, ତାହା ନିଶ୍ଚୟ ଘଟିବ ।"

ଅନେକ ବର୍ଷ ତଳେ ଜଣେ ବ୍ୟକ୍ତି ଭବିଷ୍ୟଦ୍‌ବାଣୀ କହିଥିଲେ ଯେ, ପେଲିଅସ ଧନେ ରାଜ୍ୟ ଛାଡ଼ିବାକୁ ବାଧ୍ୟ ହେବେ । ପାଦରେ ପଟେ ଜୋତା ପିନ୍ଧିଥିବା ଜଣେ ଯୁବକ ତାଙ୍କୁ ସିଂହାସନରୁ ତଡ଼ି ରାଜା ହେବ । ସେହିଦିନଠାରୁ ରାଜା ପେଲିଅସ ରାଜ୍ୟରେ ଘୋଷଣା କରିଥିଲେ, ଯାହାର ଦୁଇ ପାଦରେ ଜୋତା ନ ଥିବ, ସେ ତାଙ୍କ ପାଖକୁ ଆସିପାରିବ ନାହିଁ । ଏବେ ସେ ଜାସନଙ୍କୁ ପଟେ ଜୋତା ପିନ୍ଧି ଥିବାର ଦେଖି ତାଙ୍କ ମନରେ ଭୟ ହୋଇଗଲା । କିନ୍ତୁ ବାହାରେ ଭୟର କୌଣସି ଲକ୍ଷଣ ନ ଦେଖାଇ ସେ ଜାସନଙ୍କୁ କହିଲେ, "ତୁମେ ମୋ ରାଜ୍ୟକୁ ଆସିଥିବାରୁ ମୁଁ ଆନନ୍ଦିତ । ତୁମକୁ ଅଭିବାଦନ ଜଣାଉଛି । ମୋର ମନେହୁଏ, ତୁମେ ଜଣେ ବିଦେଶୀ ଲୋକ । ତୁମର ନାଆଁ କଅଣ ? କେଉଁଠାରୁ ଆସିଲ ?"

ଯୁବକ ଉତ୍ତର କଲେ, "ମୋର ନାମ ଜାସନ । ମୁଁ ଗୁରୁ ଚିରନ୍‌ଙ୍କ ପାଖେ ରହି ପଢ଼ୁଥିଲି । ପଢ଼ା ସାରି ଆସିଛି ।"

ରାଜା ମନ କଥା ମନରେ ରଖି କହିଲେ, "ଚିରନଙ୍କ ଛାତ୍ରମାନେ ଖୁବ୍ ବୁଦ୍ଧିମାନ୍, ଅନେକ କଥା ଜାଣନ୍ତି । ତୁମକୁ ମୁଁ ସ୍ୱାଗତ ଜଣାଉଛି । ଆଚ୍ଛା, ଚିରନଙ୍କ ଶିକ୍ଷାରେ ତୁମର ବୁଦ୍ଧି ବଢ଼ିଛି ତ ?"

ଜାସନ ଉତ୍ତର କଲେ, "ମୁଁ ଖୁବ୍ ଜ୍ଞାନ ଅର୍ଜିଛି ବୋଲି କହି ପାରିବି ନାହିଁ । କିନ୍ତୁ ଆପଣ କୌଣସି ପ୍ରଶ୍ନ ପଚାରିଲେ ତାର ଯଥାସାଧ୍ୟ ଉତ୍ତର ଦେବି ।"

ରାଜା ପଚାରିଲେ, "ଆଚ୍ଛା, ତୁମର ଯଦି କୌଣସି ଅନିଷ୍ଟକାରୀ ଶତ୍ରୁ ତୁମ ଘରକୁ ଆସିବ, ତେବେ ତୁମେ କଅଣ କରିବ ? ଯେବେ ସେ ଲୋକକୁ ତୁମେ ହାତରେ ପାଅ, ତେବେ କଅଣ କରିବ ?"

ଜାସନ ବୁଝିପାରିଲେ ଯେ ରାଜାଙ୍କର ଉଦ୍ଦେଶ୍ୟ ଭଲ ନୁହେଁ । ତଥାପି ସେ ଭୟ ନ କରି ଉତ୍ତର କଲେ, "ଶତ୍ରୁ ମୋ ଆୟତ୍ତରେ ପଡ଼ିଲେ, ମୁଁ ତାକୁ ବିପଦରେ ପକାଇବାକୁ କୁଣ୍ଠିତ ହେବ ନାହିଁ । ମୁଁ ତାକୁ ସୁନାର ଲୋମ ଆଣିବାପାଇଁ ପଠାଇଦେବ ।"

ଜାସନ 'ସୁନାର ଲୋମ ଆଣିବା' କଥା କହିବାର ଗୋଟିଏ କାରଣ ଥିଲା । ଏଭଳି କଠିନ କାମ ଆଉ କିଛି ଥିବାର ଜଣା ନଥିଲା । ଏହାକୁ ଆଣିବାକୁ ହେଲେ ଭୀଷଣ ସମୁଦ୍ର ପାର ହେବାକୁ ପଡ଼େ । ସୁନାର ଲୋମ ଆଣିବାକୁ ଯେତେ ବୀର ଯାଇଥିଲେ, କେହି ଜଣେ ହେଲେ ପ୍ରାଣ ନେଇ ଫେରି ନଥିଲେ ।

ରାଜା ପେଲିଅସ୍ ଜାସନଙ୍କୁ କହିଲେ, "ମୁଁ ଦେଖୁଛି ଚିରନଙ୍କ ପାଖରେ ରହି ତୁମେ ଖୁବ୍ ଜ୍ଞାନ ଅର୍ଜିଛ । ଏବେ ମୋର ହୁକୁମ—ତୁମେ ଯାଇ ମୋ ପାଇଁ ସୁନାର ଲୋମ ନେଇ ଆସିବ ।"

ଏଥିରେ ଜାସନ ଦବି ନଯାଇ କହିଲେ, "ମହାରାଜ, ମୁଁ ଯିବାପାଇଁ ପ୍ରସ୍ତୁତ ଅଛି; କିନ୍ତୁ ମୁଁ ଯେବେ ସୁନାର ଲୋମ ନେଇ ଫେରିଆସେ, ତେବେ ଆପଣଙ୍କର ଏ ରାଜ୍ୟ ଓ ରାଜସିଂହାସନ ଅଧିକାର କରିବ ।"

ରାଜା ଭାବିଲେ, ସୁନାର ଲୋମ ଆଣିବାକୁ ଯାଇ କେହି ଜଣେ ସୁଦ୍ଧା ଫେରି ନାହାନ୍ତି । ଜାସନ ମଧ୍ୟ ସେମାନଙ୍କ ଭଳି ମରିବ । ତେବେ ଚିନ୍ତା କଅଣ ? ଏହାପରି ବିଚାରି ସେ କହିଲେ, "ବେଶ୍, ଭଲ କଥା । ତୁମେ ଯେବେ ଫେରିଆସିବ, ମୁଁ ରାଜଗାଦି ଛାଡ଼ିଦେବ, ତୁମେ ସିଂହାସନରେ ବସିବ । ସେତେଦିନ ଯାଏ ତୁମର ସିଂହାସନ ମୁଁ ଜଗିରଖିଥିବ ।"

ଜାସନ ରାଜାଙ୍କ ମନର ଭାବ ଜାଣିପାରିଲେ । ସେ ସୁନାର ଲୋମ ଆଣିବେ ବୋଲି ପ୍ରତିଜ୍ଞା କରି ବାହାରିଲେ । ତାଙ୍କର

ମନେ ପଡ଼ିଗଲା, ଆସିଲାବେଳେ ବୃଢ଼ୀ କହୁଥିଲା, ଶାଗୁଆନ ଗଛଠାରୁ ମେ ତାଙ୍କ କଥା ଶୁଣିଥିଲି । ତେବେ ଆଗ ସେଇ ଶାଗୁଆନ ଗଛକୁ ମିଳିବେ । ଯେଉଁ ଗଛ ମଣିଷ ପରି କଥା କହିପାରେ, ତାର ନିଶ୍ଚୟ ଅଦ୍ଭୁତ ଗୁଣ ଥିବ । ତା'ଠାରୁ ସାହାଯ୍ୟ ମିଳିବ ।

ଅନେକ ଅଞ୍ଚଳ ବୁଲି ବୁଲି ଜାସନ ଗୋଟିଏ ପ୍ରକାଣ୍ଡ ବଣରେ ପହଞ୍ଚିଲେ । ସେଇ ବଣ ମଝିରେ ଏକ ବିଶାଳ ଶାଗୁଆନ ଗଛ । ତାର ଡାଳ ଗୁଡ଼ାକ ବହୁ ଦୂର ଯାଏ ଲମ୍ବି ଯାଇଛି । ତାର ଗହଳ ପତ୍ର ଯୋଗୁଁ ଖଣ୍ଡ ଖଣ୍ଡ ଏକର ଜମି ଉପରେ ସୂର୍ଯ୍ୟକିରଣ ପଡ଼ି ପାରୁ ନାହିଁ ।

ଜାସନ ଗଛ ମୂଳେ ଛିଡ଼ା ହୋଇ ଉପରକୁ ଗୁହାରି କଲେ, "ହେ ବୃକ୍ଷଦେବତା, ମୁଁ ସୁନାର ଲୋମ ଆଣିବାକୁ ବାହାରିଛି । ମୋତେ କଅଣ କରିବାକୁ ହେବ କହିଦିଅନ୍ତୁ ।"

କିଛି ସମୟ ପରେ ପତ୍ର ମଧ୍ୟରେ ଖସ୍ ଖସ୍ ଶବ୍ଦ ଶୁଣାଗଲା । ଜାସନ ମନେକଲେ ପତ୍ରଗୁଡ଼ାକ ଆପଣା ଆପଣା ଭିତରେ ଫୁସ୍ ଫୁସ୍ ହୋଇ କଅଣ ପରାମର୍ଶ କରୁଛନ୍ତି । ଶବ୍ଦ ଆସ୍ତେ ଆସ୍ତେ ବଢ଼ିଲା । ଶେଷରେ ଗଛର ଗଣ୍ଡି ପାଖରୁ ଶୁଣାଗଲା, "ଜାସନ, ଆଗେ ତୁମେ ଆର୍ଗସ ପାଖକୁ ଯାଅ । ତାକୁ କହିବ, ସେ ତୁମପାଇଁ ଗୋଟିଏ ବଡ଼ ଜାହାଜ ତିଆରି କରିଦେବ । ସେଥିରେ ପଚାଶଟି ଆହୁଲା ଥିବ । ତାପରେ ଯାହା କରିବାର କଥା, ମୁଁ ପରେ କହିବି ।"

ଜାସନ ସହରକୁ ଫେରିଯାଇ ଆର୍ଗସଙ୍କୁ ଭେଟିଲେ । ଆର୍ଗସ ଭଲ ଜାହାଜ ତିଆରି କରି ଜାଣନ୍ତି । ଜାସନ ତାଙ୍କୁ ଜାହାଜର ବିବରଣ ଦେଲେ । ସେ ଏଥିପୂର୍ବରୁ ଏତେ ବଡ଼ ଜାହାଜ ତିଆରି କରି ନ ଥିଲେ; କିନ୍ତୁ ଆର୍ଗସ ଓ ତାଙ୍କ କାରିଗରମାନେ ଜାସନଙ୍କ

ବର୍ଗଦ ଅନୁସାରେ ଗୋଟିଏ ଜାହାଜ ତିଆରି କରିଦେଲେ । ସେଥିରେ ପଚାଶଟି ଆହୁଲା ଥିଲା । ଏହାକୁ ଆର୍ଗସ ତିଆରି କରିଥିବାରୁ ଜାହାଜର ନାମ ହେଲା 'ଆର୍ଗୋ' ।

ଜାହାଜ ଠିକ୍ ହୋଇଯିବାରୁ ଜାସନ ପୁଣି ଶାଗୁଆନ ଗଛ ପାଖକୁ ଯାଇ ପଚାରିଲେ, "ଜାହାଜ ହୋଇଗଲା । ଏବେ ମୁଁ କଅଣ କରିବି ?"

ଏଥର ପଶ ଗଦ୍ଦାଳରୁ ଫୁସ୍ ଫୁସ୍ ଶବ୍ଦ ଶୁଣାଗଲା ନାହିଁ । ଗଛର ଗୋଟିଏ ବଡ଼ ଡାଳ କହିଲା, "ମୋତେ କାଟି ନେଇ, ମୋ କାଠରେ ଗୋଟିଏ ମୂର୍ତ୍ତି ତିଆରି କରାଅ । ତାକୁ ଜାହାଜର ଆଗ ମୁଣ୍ଡରେ ଖଞ୍ଜି ଦେବ ।"

ସେ କାଳରେ ଜାହାଜର ଅଗ ମୁଣ୍ଡରେ ଗୋଟିଏ କାଠର ମୂର୍ତ୍ତି ଖଞ୍ଜା ଯାଉଥିଲା । ଲୋକଙ୍କର ବିଶ୍ୱାସ ଥିଲା, ଏଇ ମୂର୍ତ୍ତିରେ ଦେବତା ରହି ଜାହାଜକୁ ଚଳାନ୍ତି ଓ ବିପଦରୁ ରକ୍ଷା କରନ୍ତି ।

ଗଛର ପରାମର୍ଶ ଅନୁସାରେ ଜାସନ ଗଛର ଡାଳଟିକୁ କଟାଇ ଜଣେ କାରିଗରକୁ ଦେଇ କହିଲେ, "ଏଥିରେ ମୋ ଜାହାଜ ପାଇଁ ଗୋଟିଏ ମୂର୍ତ୍ତି କରିଦିଅ ।" କାରିଗର କାମରେ ଲାଗିଲା । ତାକୁ ଜଣାପଡ଼ିଲା, ସତେଅବା ସେ ମୂର୍ତ୍ତି ଗଢ଼ୁନାହିଁ; କିଏ ଜଣେ ତା ହାତକୁ ଚଳାଇ ମୂର୍ତ୍ତି ଗଢ଼ୁଛି । କାମ ସରିବାରୁ ଦେଖାଗଲା, ଗୋଟିଏ ସୁନ୍ଦର ନାରୀ ମୂର୍ତ୍ତି ହୋଇଛି । ତା ମୁଣ୍ଡରେ ଏକ ଟୋପି, ମୁଣ୍ଡର ବାଳ କାନ୍ଧ ଉପରକୁ ଓହ୍ଲାଇ ପଡ଼ୁଛି । ତା ହାତରେ ଏକ ଢାଲ । ତାର ଉପରେ ମେଡୁସାର ମୁଣ୍ଡର ଛବି । ମୁଣ୍ଡର ସାପଗୁଡ଼ାକ ମଧ୍ୟ ଛବିରେ ଦେଖାଯାଉଛି । ମୂର୍ତ୍ତିର ଡାହାଣ ହାତଟି ଆଗକୁ ପ୍ରସାରିତ ହୋଇ ରହିଛି । ଜାସନ ଏହି ସୁନ୍ଦର ମୂର୍ତ୍ତିଟିକୁ ଦେଖି ଖୁବ୍ ଆନନ୍ଦିତ ହେଲେ । ଏଥେନା ଦେବୀଙ୍କର

ମୂର୍ତ୍ତି ଠିକ୍ ଏଇପରି । ସେ ଭାବିଲେ ଯେ ଏହି ମୂର୍ତ୍ତିରେ ଏଥିନ ଦେବୀ ବିଜେ କରିଅଛନ୍ତି । ସେ ଏହି ମୂର୍ତ୍ତିଟି ନେଇ ଜାହାଜ ଆଗ ମୁଣ୍ଡରେ ଖଞ୍ଜିଦେଲେ ।

ଜାହାଜଟି ପ୍ରସ୍ତୁତ ହୋଇଗଲା । ଏବେ ଜାସନ କଅଣ କରିବେ ? ଶାଗୁଆନ ଗଛର ପରାମର୍ଶ ମାଗିବାକୁ ସେ ବାହାରିଲେ, ଏହି ସମୟରେ ଜାହାଜର ସେହି ମୂର୍ତ୍ତି କହିଲେ, "ଆଉ ଗଛପାଖକୁ ଯିବା ଆବଶ୍ୟକ ନାହିଁ । ତୁମର ଯାହା ଜାଣିବାର କଥା ଏଣିକି ମୋତେ ପଚାରିବ ।"

ମୂର୍ତ୍ତି କଥା କହିବାର ଶୁଣି ଜାସନ ଆହୁରି ଆଶ୍ଚର୍ଯ୍ୟ ହୋଇଗଲେ । ଗଛ କଥା କହୁଥିଲା, ଏବେ ସେ ଗଛର କାଠରେ ତିଆରି ହୋଇଥିବା ମୂର୍ତ୍ତି ମଧ୍ୟ କଥା କହୁଛି । ଏଥିରେ କିଏ ଅବା ଆଶ୍ଚର୍ଯ୍ୟ ହେବ ନାହିଁ ? ଜାସନ ସେହି ମୂର୍ତ୍ତିକୁ ପଚାରିଲେ, "ଜାହାଜରେ ପଚାଶଟି ଆହୁଲା ଲାଗିଛି । ଏହାକୁ ଚଳାଇବା ପାଇଁ ପଚାଶଜଣ ନାଉରୀ ଦରକାର । ପୁଣି ନାଉରୀମାନେ ଖୁବ୍ ବଳୁଆ ଓ ସାହସୀ ନ ହେଲେ ଚଳିବ ନାହିଁ । ବାଟରେ କେତେ ବିପଦ ପଡ଼ିପାରେ । ନାଉରୀମାନେ ସେ ସବୁ ବିପଦ ସହିବାକୁ ପ୍ରସ୍ତୁତ ଥିବା ଆବଶ୍ୟକ । ଏତେ ନାଉରୀ ମୁଁ କାହୁଁ ପାଇବି ?"

ମୂର୍ତ୍ତିଟି ଉତ୍ତର କଲା, "ସେଥିପାଇଁ ଚିନ୍ତା କରିବାର କାରଣ ନାହିଁ । ତୁମେ ଯାଇ ଗ୍ରୀସ୍‌ର ବୀରମାନଙ୍କୁ ଡାକ । ନାଉରୀର ଅଭାବ ରହିବ ନାହିଁ ।"

ଜାସନ ଗ୍ରୀସର ବଡ଼ ବଡ଼ ସହରକୁ ଲୋକ ପଠାଇ ଜଣାଇ ଦେଲେ, ସେ ସୁନାର ଲୋମ ଆଣିବାକୁ ଯାଉଛନ୍ତି । ସେ ଏହି କାର୍ଯ୍ୟରେ ଅଣଚାଶ ଜଣ ସାହସୀ ବୀର ଚାହାନ୍ତି । ସେମାନଙ୍କୁ ଜାହାଜ ଚଳାଇ ଦୂର ଦେଶକୁ ଯିବାକୁ ପଡ଼ିବ । ଜାସନ ନିଜେ

ଗୋଟିଏ ଆଦ୍ଭୁତ୍ ଚଳାଇବେ । ସେଥିପାଇଁ ସେ ପଚାଶ ଜଣ ପରିବର୍ତ୍ତେ ଅଣଚାଶ ଜଣ ଲୋକ ଖୋଜୁଥିଲେ ।

ଜାସନ ସୁନାର ଲୋମ ଆଣିବାକୁ ଯିବେ ଶୁଣି ଗ୍ରୀସ୍‌ର ବଡ଼ ବଡ଼ ସହରରୁ ବୀରମାନେ ଆସି ତାଙ୍କ ପାଖେ ପହଞ୍ଚି ଗଲେ । ସେମାନଙ୍କ ଭିତରୁ ଅନେକେ ଏଥିପୂର୍ବରୁ ରାକ୍ଷସମାନଙ୍କ ସଙ୍ଗେ ଯୁଦ୍ଧ କରି ସୁନାମ ଅର୍ଜିଥିଲେ; କେତେକ ଚିରନଙ୍କ ପାଖରୁ ଅନ୍ୟାନ୍ୟ ବିଦ୍ୟା ସଙ୍ଗେ ଯୁଦ୍ଧବିଦ୍ୟା ଶିଖିଥିଲେ । ସମସ୍ତଙ୍କ ମନରେ ଅପୂର୍ବ ଉତ୍ସାହ । ଜାସନଙ୍କ ସଙ୍ଗରେ ସୁନାର ଲୋମ ଆଣିବାକୁ ଯିବା କଅଣ କମ୍ ଭାଗ୍ୟର କଥା ! ଏହି ବୀରମାନଙ୍କ ଭିତରେ ଥିଲେ ହରକିଉଲସ, ଯାଆଁଳା ଭାଇ କାଷ୍ଟର ଓ ପୋଲକ୍‌ସ, ଥିସିଅସ୍, ଅର୍ଫିଅସ ପ୍ରଭୃତି । ଥିସିଅସ ଏଥିପୂର୍ବରୁ ଗୋଟିଏ ରାକ୍ଷସ ମାରିଥିଲେ । ଅର୍ଫିଅସଙ୍କର ବୀରତ୍ୱ ଛଡ଼ା ଆଉ ଗୋଟିଏ ଗୁଣ ଥିଲା । ସେ ଏଡ଼େ ସୁନ୍ଦର ବାଦ୍ୟ ବଜାଇ ପାରୁଥିଲେ ଯେ ତାହା ଶୁଣିବାକୁ ବାଘ ଭାଲୁ ମଧ୍ୟ କାନ ଡେରି ରହୁଥିଲେ । ସେ ତାଙ୍କ ବୀଣାଟିକୁ କେବେ ହାତଛଡ଼ା କରୁ ନ ଥିଲେ ।

ଏମାନଙ୍କ ଛଡ଼ା ଜଣେ ବୀରରମଣୀ ମଧ୍ୟ ଆସିଥିଲେ । ତାଙ୍କର ନାମ ହେଉଛି ଆଟଲାଣ୍ଟା । ପିଲାଦିନୁ ତାଙ୍କୁ ଗୋଟିଏ ଭାଲୁ ନେଇଯାଇ ପାହାଡ଼ ପର୍ବତ ଭିତରେ ଲୁଚାଇ ପାଳିଥିଲା । ସେ ଯେତେ ବେଗରେ ଦଉଡ଼ ପାରୁଥିଲେ, ଆଉ କେହି ସେପରି ପାରୁ ନ ଥିଲେ । ଦଉଡ଼ିଲାବେଳେ ତାଙ୍କ ପାଦ ଭୂଇଁରେ ପଡ଼ିଲା ଭଳି ଜଣାଯାଏ ନାହିଁ । ବଣ ଜଙ୍ଗଲରେ ବଢ଼ିଥିବାରୁ ସେ ବଣର ପଶୁମାନଙ୍କ ଭଳି ଚଞ୍ଚଳ ଥିଲେ । ସେ କ ଘରେ ରହି ରନ୍ଧାବଢ଼ା କରନ୍ତେ ନାଁ ଛୁଞ୍ଚି ସୂତା ଧରି ରୁମାଲ ସିଲେଇ କରନ୍ତେ ? ସେ କହୁଥିଲେ, "ଝିଅମାନେ କ'ଣ ପୁଅଙ୍କଠାରୁ ହୀନ ? ତାଙ୍କର

ସେମିତି ହାତ ଗୋଡ଼ ଅଛି, ଆମର ସେମିତି ହାତ ଗୋଡ଼ ଅଛି । ସେମାନେ ଯେବେ ଯୁଦ୍ଧ କରିବେ ଆମେ ନ କରିବା କାହିଁକି ?"

ପବନ ଦେବତାଙ୍କର ଦୁଇଟି ପୁଅ ମଧ୍ୟ ଏହି ଦଳରେ ଥିଲେ । ସେ ଦୁହିଙ୍କର କାନ୍ଧ ପାଖରେ ଯୋଡ଼ାଏ ଲେଖାଏଁ ଡେଣା ଥିଲା । ସେମାନେ ଫୁଙ୍କିଦେଲେ ପବନରେ ଗଛପତ୍ର ଉଡ଼ି ଯାଉଥିଲା । ଏଥିରୁ ତାଙ୍କର ବଳ ଜଣାପଡ଼ିବ । ମୋଟଉପରେ କୁହାଯାଇପାରେ, ଏମାନେ ସମସ୍ତେ ବୀରପଣ ଓ ସାହସରେ କେହି କାହାକୁ ଊଣା ନ ଥିଲେ ।

ଏବେ ବୀରମାନେ ଆହୁଲା ଧରି ଜାହାଜ ଚଳାଇବାକୁ ବସିଲେ । ଏତେ ବଡ଼ ଜାହାଜ । ଯେତେ ଚେଷ୍ଟା କଲେ ମଧ୍ୟ ଜାହାଜ ଚଳିଲା ନାହିଁ । ଜାହାଜ ଆଗରେ ଥିବା ମୂର୍ତ୍ତିଟି କହିଲା, "ଅର୍ଫିଅସ ବୀଣା ବଜାଇଲେ ଜାହାଜ ଚାଲିବ ।" ସତକୁ ସତ ଅର୍ଫିଅସ୍ ବୀଣା ବଜାଇବାରୁ ଜାହାଜ ଚାଲିଲା । ପଚାଶ ଜଣ ଯାକ ଆହୁଲା ପକାଉଥାନ୍ତି । ଜାହାଜ ସମୁଦ୍ର ଉପରେ ଉଡ଼ିଗଲା ପରି ଚାଲିଥାଏ । ସେମାନେ କୂଳ ଛାଡ଼ିଲା ବେଳେ ଲୋକେ ସେମାନଙ୍କୁ ଆଶୀର୍ବାଦ କଲେ; ସେମାନଙ୍କର ଜୟଧ୍ୱନି କଲେ । କେବଳ ରାଜା ପେଲିଅସଙ୍କ ମନ ଖରାପ । ତାଙ୍କ ମନ ରାଗରେ ଜଳିଉଠୁଥାଏ । ସେ ଗୋଟାଏ ପାହାଡ଼ ଉପରେ ଛିଡ଼ା ହୋଇ ଜାହାଜ କୂଳ ଛାଡ଼ିବାର ଦେଖିଲେ । ଲୋକମାନଙ୍କର ଜୟଧ୍ୱନି ଶୁଣି ସେ ବିରକ୍ତ ହେଉଥାନ୍ତି; ଭାବୁଥାନ୍ତି, ଜାହାଜଟା ଝଡ଼ ତୋଫାନରେ ଖଣ୍ଡ ଖଣ୍ଡ ହୋଇଗଲେ ଭଲ ହୁଅନ୍ତା ।

ଜାହାଜ ଚଳାଉଥିବାବେଳେ ଜାସନଙ୍କ ସଙ୍ଗୀମାନେ କେବଳ ସୁନାର ଲୋମ ବିଷୟରେ ଗପ କରୁଥାନ୍ତି । ସମସ୍ତେ ଏହି କଥା ଶୁଣିଥିଲେ, କିନ୍ତୁ କେହି ଏହାକୁ ସ୍ୱଚକ୍ଷୁରେ ଦେଖି ନଥିଲେ । ଲୋମ ସିନା ମେଣ୍ଢା ଦେହରେ ଥାଏ—ସୁନାର ଲୋମ କଅଣ ?

ଏଠାରେ ଏହି ସୁନାର ଲୋମ କଅଣ, କହି ରଖିବା ଦରକାର । ଅତି ପୂର୍ବ କାଳରେ ଗୋଟିଏ ମେଣ୍ଢା ଥିଲା । ଥରେ ସେ ଦୁଇଟି ପିଲାଙ୍କୁ ବିପଦରୁ ରକ୍ଷା କରିବା ପାଇଁ ପ୍ରାଣପଣ ଚେଷ୍ଟା କରିଥିଲା । ପିଲା ଦୁଇଟି ହେଉଛନ୍ତି ଭାଇ ଭଉଣୀ । ସେ ଏହି ପିଲା ଦୁଇଟିଙ୍କୁ ପିଠିରେ ବସାଇ କେତେ ରାଜ୍ୟ, କେତେ ସମୁଦ୍ର ବୁଲିଲା । ଶେଷରେ କଲ୍‌ଚିସ୍ ବୋଲି ଗୋଟିଏ ବନ୍ଦରରେ ପହଞ୍ଚିଲା । ଏହିଠାରେ ଭଉଣୀଟି ମେଣ୍ଢା ପିଠିରୁ ଖସିପଡ଼ି ସମୁଦ୍ରରେ ବୁଡ଼ି ମଲା । ଝିଅଟିର ନାଆଁ ଥିଲା ହେଲି । ତେଣୁ ସେ ଯେଉଁଠାରେ ବୁଡ଼ି ମଲା ସେ ସ୍ଥାନର ନାମ ହେଲା ହେଲିସପଣ୍ଟ । ଏବେ ମଧ୍ୟ ଏସିଆ ଓ ଇଉରୋପର ମିଳନ ସ୍ଥଳରେ ହେଲସପଣ୍ଟ ରହିଛି । ପୁଅଟିର ନାମ ଥିଲା ଫ୍ରିକ୍‌ସସ୍ । ସେ ମେଣ୍ଢା ପିଠିର ଲୋମକୁ ଧରି ବସି ରହିଲା । ଶେଷରେ ସେ ନିରାପଦରେ ଓହ୍ଲାଇଲା ।

ଏତେ ବାଟ ପିଲା ଦୁଇଟିଙ୍କୁ ପିଠିରେ ବସାଇ ବୁଲି ବୁଲି ମେଣ୍ଢାଟିର ଦେହରେ ଆଉ ବଳ ନଥିଲା । ପୁଅଟି ତା ପିଠିରୁ ଯେମିତି ବାଲି ଉପରେ ଓହ୍ଲାଇ ପଡ଼ିଛି, ସେମିତି ମେଣ୍ଢାଟିର ପ୍ରାଣ ଗୁଡ଼ିଗଲା । ସାମାନ୍ୟ ମେଣ୍ଢାଟିର ଏହି କାର୍ଯ୍ୟରେ ଦେବତାମାନେ ସନ୍ତୁଷ୍ଟ ହୋଇ ତାର ଚମଡ଼ାକୁ ସୁନା କରିଦେଲେ । ତା ଦେହରୁ ଏକ ପ୍ରକାର ଜ୍ୟୋତି ବାହାରିଲା । ସମଗ୍ର ପୃଥିବୀରେ ଏହା ଭଳି ଅପୂର୍ବ ଦ୍ରବ୍ୟ ଆଉ କିଛି ନଥିଲା । ଗୋଟିଏ ଗଛ ଡାଳରେ ଏହି ସୁନାର ଚମଡ଼ାଟି ଓହଳିଥାଏ । ତାର ଲୋମର ଜ୍ୟୋତିରେ ସେ ଅଞ୍ଚଳଯାକ ଆଲୁଅ ହୋଇଯାଉଥାଏ । ଏହାକୁ କାଳେ କିଏ ନେଇଯିବ ବୋଲି ଗୋଟାଏ ଦୈତ୍ୟ ଗଛମୂଳେ ଏହାକୁ ଜଗି ରହିଥାଏ । କେତେ ବୀର, କେତେ ରାଜାଙ୍କର ଏହି ସୁନା ଲୋମ ଉପରେ ଲୋଭ ।

କେତେ ଲୋକ ଏହାକୁ ନେବାପାଇଁ ଚେଷ୍ଟା କରି ପ୍ରାଣ ହରାଇ ଥିଲେ, ତାର ସଂଖ୍ୟା ନାହିଁ । ଏବେ ଜାସନ ଓ ତାଙ୍କ ସଙ୍ଗୀମାନେ ଏହି ସୁନାର ଲୋମ ନେବେ ବୋଲି ବାହାରିଥିଲେ ।

ସେମାନଙ୍କୁ ବାଟରେ ଅନେକ ବିପଦର ସମ୍ମୁଖୀନ ହେବାକୁ ପଡ଼ିଥିଲା, କେତେ ଅସୁର ମାରିବାକୁ ହୋଇଥିଲା । ଯାହାହେଉ ସେମାନେ ଏ ସବୁ ବିପଦ ପାରହୋଇ ଗଲେ ।

ଏଥି ମଧ୍ୟରେ ଯେଉଁ ଫ୍ରିକ୍ସସଙ୍କୁ ମେଣ୍ଢା ରକ୍ଷା କରିଥିଲା, ସେ ରାଜା ହୋଇଥିଲେ । ତାଙ୍କର ଦୁଇ ପୁଅ । ଜାସନଙ୍କର ଏହି ରାଜପୁତ୍ର ଦୁହିଙ୍କ ସଙ୍ଗେ ଦେଖା ହେଲା । ସେ ଦୁହେଁ ଜାସନଙ୍କୁ କହିଲେ, "କଲଚିସରେ ଯେଉଁଠାରେ ସୁନାର ଲୋମ ରହିଛି, ତାହା ଆମମାନଙ୍କୁ ଜଣା । ଆମେ ବାଟ ଦେଖାଇଦେବୁ ।"

କଲଚିସ ଯେଉଁ ରାଜ୍ୟରେ, ତାର ରାଜା ଥିଲେ ଏଇଟିସ । ଯେଉଁ ସାଇର୍ସର କଥା ତୁମେ ଆଗରୁ ଶୁଣିଛ, ସେ ହେଉଛି ଏହି ଏଇଟିସଙ୍କର ଭଉଣୀ । ଭଉଣୀ ମନ୍ତ୍ରୀ ବଳରେ କେତେ ମଣିଷଙ୍କୁ ପଶୁ ପକ୍ଷୀ କରିଦେଇ କଷ୍ଟ ଦେଉଥିଲା । ଏ ରାଜା ମଧ୍ୟ ସେହିପରି ନିର୍ଦ୍ଦୟ ଥିଲେ । ଲୋକଙ୍କର କଷ୍ଟ ଦେଖିଲେ ସେ ଆନନ୍ଦ ପାଉଥିଲେ । ପୁଣି ତାଙ୍କର ଇଚ୍ଛା, ସୁନାର ଲୋମ ସେ ନିଜେ ରଖିବେ ।

ଜାସନଙ୍କୁ ଦେଖି ରାଜା ଏଇଟିସ କହିଲେ, "ତୁମେ ସୁନା ଲୋମ ନେବ ବୋଲି ଆସିଛ ସତ; କିନ୍ତୁ ସେଠାକୁ ଯିବାକୁ ହେଲେ ତୁମକୁ କଅଣ କରିବାକୁ ହେବ ଜାଣ ?"

ଜାସନ ଉତ୍ତର କଲେ, "ମୁଁ ଶୁଣିଛି ଯେ ଯେଉଁ ଗଛରେ ସୁନା ଲୋମ ଝୁଲୁଛି ତା' ମୂଳରେ ଗୋଟାଏ ରାକ୍ଷସ ଜଗିରହିଥାଏ । ସେ କୁଆଡ଼େ ଏଡ଼େ ଭୟଙ୍କର ଯେ ମଣିଷ ଦେଖିଲା ମାତ୍ରେ ଏକାଥରକେ ଗିଳିଦିଏ ।"

ରାଜା କହିଲେ, "ଯାହା ଶୁଣିଛ ସେ କଥା ସତ । ମାତ୍ର ସେଠାକୁ ଯିବା ପୂର୍ବରୁ ତୁମକୁ ଆହୁରି ଅନେକ କାମ କରିବାକୁ ପଡ଼ିବ । ମୋର ଯୋଡ଼ିଏ ଷଣ୍ଢ ଅଛନ୍ତି । ସେ ଯୋଡ଼ିକୁ ସ୍ୱର୍ଗର କାରିଗର ଭଲ୍‌କାନ ତିଆରି କରି ମୋତେ ଦେଇଛନ୍ତି । ତାଙ୍କର ଦେହ ପିତ୍ତଳର ଓ ପେଟ ଭିତରେ ଚୁଲ୍ଲୀ ପରି ସବୁବେଳେ ନିଆଁ ଜଳୁଥାଏ । ନିଶ୍ୱାସ ନେଲାବେଳେ ତାଙ୍କ ନାକ ଓ ପାଟିରୁ ନିଆଁ ବାହାରୁଥାଏ ଓ କେହି ସେମାନଙ୍କ ପାଖକୁ ଗଲାମାତ୍ରେ ସେ ସେହି ନିଆଁରେ ପୋଡ଼ି ପାଉଁଶ ହୋଇଯାଏ । ଆଗେ ସେ ଷଣ୍ଢ ଦୁହିଙ୍କୁ ଆୟତ୍ତ କରିବାକୁ ପଡ଼ିବ । ତୁମେ ଏହା କରିପାରିବତ ?"

ଜାସନ କହିଲେ, "ମୁଁ ଯେକୌଣସି ବିପଦ ପାଇଁ ପ୍ରସ୍ତୁତ ହୋଇ ଆସିଛି । ଷଣ୍ଢମାନଙ୍କୁ ଜବତ କରିପାରିବି ।"

ରାଜା ପୁଣି କହିଲେ, "ଖାଲି ଷଣ୍ଢ ଦୁଇଟାକୁ ଆୟତ୍ତ କଲେ ହେବ ନାହିଁ, ସେ ଦୁହିଙ୍କୁ ଲଙ୍ଗଳରେ ଯୋଚି ସହର ମୁଣ୍ଡରେ ଥିବା ପଡ଼ିଆକୁ ହଳ କରିବାକୁ ପଡ଼ିବ ଓ ହଳ କରି ସାରି ସେଥିରେ ଅସୁରର ଦାନ୍ତ ବୁଣିବ । କିଛି ସମୟ ପରେ ସେହି ଦାନ୍ତରୁ ଗୋଟାଏ ପ୍ରକାଣ୍ଡ ସୈନ୍ୟ ଦଳ ଭୂଇଁ ଭେଦି ବାହାରିବେ । କାଡ଼୍‌ମସ୍ ବୋଲି ଜଣେ ବୀର ଅସୁରର ସେହି ଦାନ୍ତଗୁଡ଼ିକ ଉପାଡ଼ି ଦେଇ ରଖିଯାଇ ଅଛନ୍ତି । ସେ ଦାନ୍ତର ଅଦ୍ଭୁତ ଗୁଣ । ସେଥିରୁ ଯେଉଁ ସୈନ୍ୟ ବାହାରିବେ ସେମାନଙ୍କୁ ଯୁଦ୍ଧରେ ମାରିବାକୁ ହେବ । ତୁମେ ମୋଟେ ପଚିଶ ଜଣ ଆସିଛ । ଏତେ ସୈନ୍ୟଙ୍କୁ ମାରିବ କିପରି ?"

ଜାସନ ଉତ୍ତର କଲେ, ଶିରନଙ୍କ ପାଖେ ପଢ଼ିଲାବେଳେ ତାଙ୍କଠାରୁ ସେ ଅସୁର ଓ କାଡ଼୍‌ମସଙ୍କ କଥା ଶୁଣିଛି । ଦାନ୍ତରୁ ଯେଉଁ ସୈନ୍ୟମାନେ ବାହାରିବେ ସେମାନଙ୍କୁ ଜବତ କରିପାରିବି ବୋଲି ମୋର ସାହସ ହେଉଛି ।"

ଏଇକଥା ମନେ ମନେ ଭାବିଲେ, "ପିଲା ମନେ ମନେ ଖୁସି ହେଉଛି । ଆଗ ମୋ ଷଣ୍ଢଙ୍କ ହାବୁଡ଼େ ପଡ଼ୁଯାଉ । ସେତେବେଳେ ମଜା ବାହାରି ଯିବ ।" ତାହାପରେ ଜାସନଙ୍କୁ ଶୁଣାଇ ସେ କହିଲେ, "ବେଶ୍, କାଲି ସକାଳେ ଦେଖିବା, ତୁମେ କପରି ହଳ କରି ପାରିଥିବ ।"

ରାଜା ଓ ଜାସନଙ୍କ ଭିତରେ କଥାବାର୍ତ୍ତା ଚାଲିଥିଲା ବେଳେ ଗୋଟିଏ ସୁନ୍ଦରୀ ଝିଅ ରାଜାଙ୍କ ସିଂହାସନ ପଛରେ ଛିଡ଼ା ହୋଇ ସବୁ ଶୁଣୁଥିଲା । ଜାସନ ରାଜାଙ୍କ ପାଖରୁ ଚାଲିଗଲା ପରେ ସେ ଘରୁ ବାହାରିଆସି ତାଙ୍କୁ ଭେଟି କହିଲା, "ଜାସନ, ମୁଁ ହେଉଛି ରାଜା-ଙ୍କର ଝିଅ । ମୋର ନାଆଁ ମିଡ଼ିଆ । ମୋଠାରେ ତୁମର ବିଶ୍ୱାସ ଥିଲେ, ତୁମେ ମୋ କଥା ଅନୁସାରେ କାମ କର । ରାଜାଙ୍କ ଷଣ୍ଢଙ୍କୁ କପରି ଆୟତ୍ତ କରିହେବ, ସେ ଉପାୟ ମୁଁ ବତାଇଦେବି ।"

ଜାସନ ଏହି ପ୍ରସ୍ତାବରେ ଆନନ୍ଦରେ ସ୍ୱୀକୃତ ହୋଇ ରାଜ-କନ୍ୟାଙ୍କୁ ଧନ୍ୟବାଦ ଦେଇ କହିଲେ, "ତୁମର ସାହାଯ୍ୟ ପାଇଁ ଜୀବନଯାକ ଋଣୀ ରହିବି । ତୁମେ ଖୁବ୍ ବୁଦ୍ଧିମତୀ । ତୁମେ କିଛି ଗୁଣିବିଦ୍ୟା ଜାଣ କି ?"

ରାଜକନ୍ୟା ଉତ୍ତର ଦେଲେ, "ହଁ, ଜାଣେ । ମୋର ପିଉସୀ ସାର୍ସି ସେ ବିଦ୍ୟାରେ ଧୁରନ୍ଧର । ତାଙ୍କଠାରୁ ମୁଁ କିଛି ଶିଖିଛି । ତୁମର ଯଦି ପ୍ରକୃତରେ ସାହସ ଥାଏ, ତେବେ ମୁଁ ତୁମକୁ ସାହାଯ୍ୟ କରିବି । ମୋ ବାପାଙ୍କ ଷଣ୍ଢର ନିଶ୍ୱାସରେ ଯେ କେହି ପୋଡ଼ି ପାଉଁଶ ହୋଇଯିବ । କିନ୍ତୁ ମୁଁ ତୁମକୁ ଗୋଟିଏ ତେଲ ଦେବି । ତାହାକୁ ମୁଁ ମନ୍ତ୍ର କରିଛି । ଦେହରେ ତାହା ଲଗାଇଲେ ତୁମ ଦେହ ଷଣ୍ଢର ନିଶ୍ୱାସ ନିଆଁରେ ପୋଡ଼ି ଯିବ ନାହିଁ । ଏହା କହି ସେ ଜାସନଙ୍କ ଦେହରେ କିଛି ତେଲ ବୋଳି ଦେଲେ । ତାପରେ

ଜାସନଙ୍କ ହାତରେ ଗୋଟିଏ ସୁନାର ଫରୁଆ ଦେଇ କହିଲେ, "ଏଥିରେ ଗୋଟାଏ ଔଷଧ ଅଛି । ଏହି ଫରୁଆକୁ ଧରି ରାତିଅଧରେ ନଅର ଆଗରେ ମୋ ସଙ୍ଗେ ଦେଖା କରିବ । ତେଣିକି କଅଣ କରିବାକୁ ହେବ ମୁଁ କହିଦେବି । ତୁମେ ଭୟ ନ କରି କାମ କଲେ, ପାହାଡ଼ିଆ ବେଲକ୍ଷଣ୍ଢ ଦୁଇଟି ତୁମର ବଶ ହୋଇଯାଇଥିବେ ।"

ରାଜକନ୍ୟା ଚାଲିଗଲେ । ଏଣେ ଜାସନ ତାଙ୍କ ସଙ୍ଗୀମାନଙ୍କ ପାଖକୁ ଯାଇ ସବୁ କଥା ଜଣାଇ ଦେଲେ ଓ ସମସ୍ତେ ପ୍ରସ୍ତୁତ ହୋଇ ରହିବାକୁ ପରାମର୍ଶ ଦେଲେ ।

ରାତି ଅଧରେ ଜାସନ ନଅର ଆଗରେ ମିଡ଼ିଆଙ୍କୁ ଦେଖିଲେ । ମିଡ଼ିଆ ତାଙ୍କ ହାତକୁ ଗୋଟିଏ ଟୋକେଇ ବଢ଼ାଇ ଦେଇ କହିଲେ ଯେ ସେଥିରେ ଅସୁରର ଦାନ୍ତ ଅଛି । ସହରର ଲୋକେ ସେତେବେଳକୁ ଶୋଇ ପଡ଼ିଥିଲେ । ଜାସନ ମିଡ଼ିଆଙ୍କ ପଛେ ପଛେ ଗଲେ । ଦୁହେଁ ଯାକ ସହର ମୁଣ୍ଡରେ ଥିବା ଏକ ବଡ଼ ପଡ଼ିଆରେ ପହଞ୍ଚିଲେ । ଏହି ପଡ଼ିଆକୁ ହଳ କରି ସେଥିରେ ଅସୁରର ଦାନ୍ତ ବୁଣିବାକୁ ହେବ । ସେତେବେଳକୁ ଷଣ୍ଢ ଦୁଇଟା ପଡ଼ିଆର ଗୋଟାଏ ମୁଣ୍ଡରେ ଥାଆନ୍ତି । ମିଡ଼ିଆ ଚୁପ୍ କରି ଜାସନଙ୍କ କାନ ପାଖରେ କହିଲେ, "ଏଇ, ସେ ପଟେ ଷଣ୍ଢ ଦୁଇଟା ଅଛନ୍ତି । ସେମାନେ ତୁମକୁ ଦେଖିଲା ମାତ୍ରେ ପବନ ପରି ମାଡ଼ି ଆସିବେ । ତାଙ୍କର ନାକ ଓ ପାଟିରୁ ନିଆଁ ବାହାରିବା ଦେଖି ଡରି ଯିବ ନାହିଁ ।"

ଜାସନଙ୍କ ମନରେ ସନ୍ଦେହ ଆସୁଥାଏ । ସେ ପଚାରିଲେ, "ତୁମେ ନିଶ୍ଚୟ କରି ଜାଣ ଯେ, ଏ ତେଲ ଯୋଗେ ମୋ ଦେହ ପୋଡ଼ି ଯିବ ନାହିଁ ?"

ମିଡ଼ିଆ ଉତ୍ତର କଲେ, "ତୁମର ଯେବେ ମନରେ ଟିକିଏ ହେଲେ ସନ୍ଦେହ ହେଉଛି, ତେବେ ଏଇଠାରୁ ଫେରିଯାଅ । ଯାହାର ମନ ଦୁର୍ବଳ, ସେ ଏଭଳି କାମରେ ହାତ ଦେବା ଉଚିତ ନୁହେଁ ।"

ଜାସନ ମନ ଦୃଢ଼ କରି ଏତେ ବାଟ ଆସିଛନ୍ତି । ସେ କଅଣ ଏତେ ଶୀଘ୍ର ଫେରି ପଳାଇ ଯାଆନ୍ତେ ! ସେ ଖୁବ୍ ସାହସରେ କିଛିଦୂର ଆଗକୁ ଯାଇ ଦେଖିଲେ, ଗୋଟାଏ ଆଲୁଅ ଦିଶୁଛି । ଡାହାଣୀ ଆଲୁଅ ପରି ଜଳି ଉଠୁଛି, ପୁଣି ଲିଭି ଯାଉଛି । ଏହି ଆଲୁଅ ଷଣ୍ଢ ଦୁଇଟାଙ୍କର ନାକରୁ ବାହାରୁଥିଲା । ଜାସନ ଯେତିକି ଆଗକୁ ଗଲେ ନିଆଁ ସେତିକି ଉଜ୍ଜ୍ୱଳ ଦେଖାଗଲା । ସେ ଗୋଟାଏ ଗଛ ମୂଳରେ ଛିଡ଼ାହୋଇ ରହିଲେ ।

ଏଥି ମଧ୍ୟରେ ଷଣ୍ଢ ଦୁଇଟାର ନିଦ ଭାଙ୍ଗିଗଲା । ଦୁହିଙ୍କର ମୁହଁରୁ ଏତେ ନିଆଁ ବାହାରିଲା ଯେ ଗଛଟା ଜଳିଉଠିଲା; ପଡ଼ିଆ-ଯାକ ଦିନ ଭଳି ଆଲୁଅ ହୋଇଗଲା । ଜାସନଙ୍କୁ ଦେଖିପାରି ଷଣ୍ଢ ଦୁଇଟା ଜାସନଙ୍କ ପାଖକୁ ମାଡ଼ି ଆସିଲେ । ମାତ୍ର ତେଲ ଗୁଣରୁ ସେମାନଙ୍କ ନିଆଁରେ ତାଙ୍କ ଦେହରେ ଫୋଟକାଟାଏ ସୁଦ୍ଧା ହେଲାନାହିଁ ।

ଜାସନ ଜଗିରହିଲେ । ଷଣ୍ଢ ଦୁଇଟା ତାଙ୍କ ପାଖକୁ ଶିଙ୍ଗ ଉଞ୍ଚାଇ ମାଡ଼ି ଆସିଲା ଷଣି ସେ ଗୋଟାକର ଶିଙ୍ଗ ଓ ଆଉ ଗୋଟାକର ଲାଞ୍ଜ ଧରି ପକାଇଲେ । ଜାସନଙ୍କର ଏ ସାହସ ଦେଖି ଷଣ୍ଢ ଦୁଇଟାର ଭୟ ହୋଇଗଲା । ସେମାନେ ଆଉ ଜାସନଙ୍କୁ ମାରିବାକୁ ସାହସ କଲେ ନାହିଁ । ଜାସନ ଷଣ୍ଢ ଦୁଇଟିକୁ ନେଇ ଲଙ୍ଗଳରେ ଯୋଚି ଦେଲେ । ଏଣିକି ସେମାନଙ୍କ ନାକରୁ କିମ୍ବା ମୁହଁରୁ ନିଆଁ ବାହାରିଲା ନାହିଁ ଓ ପୋଷା ବଳଦ ପରି ଜାସନଙ୍କ କଥା ମାନି ଚାଲିଲେ ।

ଜାସନ ଶିରନଙ୍କ ପାଖରୁ କପରି ହଳ କରିବାକୁ ହୁଏ ଶିଖିଥିଲେ । ବୁଲି ବୁଲି ପଡ଼ିଆଟାଯାକ ଚଷ ହୋଇଗଲା । ସେତେବେଳକୁ ରାତି ତିନି ପହର ହେବ । ଆକାଶରେ ଚନ୍ଦ୍ର ପଡ଼ିଥାନ୍ତି ।

ମିଡ଼ିଆ ଦେଇଥିବା ଟୋକେଇରୁ ଅସୁର ଦାନ୍ତ ବାହାର କରି ଜାସନ ପଡ଼ିଆଯାକ ବୁଣିଦେଲେ । ରାଜକନ୍ୟା ଜାସନଙ୍କର ସାହସ ଦେଖି ମନେ ମନେ ସନ୍ତୁଷ୍ଟ ହେଲେ । ତାଙ୍କର ବିଶ୍ୱାସ ହେଲା, ଜାସନ ସୁନାର ଲୋମ ନେଇପାରିବେ ।

ମିଡ଼ିଆ ଜାସନଙ୍କ ପାଖେ ପାଖେ ରହି ତାଙ୍କୁ ଉତ୍ସାହ ଦେଉଥାନ୍ତି । ଅସୁର ଦାନ୍ତ ବୁଣା ହେଲା ପରେ କଅଣ ହେବ ବୋଲି ଜାସନ ପଚାରିବାରୁ ମିଡ଼ିଆ କହିଲେ, "କିଛି ସମୟ ପରେ ଦାନ୍ତଗୁଡ଼ିକରୁ ସୈନ୍ୟମାନେ ବାହାରିବେ । ସେତେବେଳେ ସେମାନଙ୍କୁ ମାରିବାକୁ ହେବ । ତୁମେ ଟିକିଏ ଅପେକ୍ଷା କରି ରହ ।"

ଚନ୍ଦ୍ରକିରଣ ପଡ଼ିଥାଏ । ହଳ ହୋଇଥିବା ପଡ଼ିଆ ସ୍ପଷ୍ଟ ଦେଖାଯାଉଥାଏ । ଜାସନ ପଡ଼ିଆକୁ ଚାହିଁ ରହିଥାନ୍ତି । କିଛି ସମୟ ପରେ ପଡ଼ିଆ ଯାକରେ ବର୍ଛାର ଅଗ୍ରଭାଗ ଦେଖାଗଲା । ପ୍ରଥମେ ସୈନ୍ୟମାନଙ୍କ ମୁଣ୍ଡର ଟୋପି, ତାପରେ ସେମାନଙ୍କ ମୁହଁ ଦେଖାଗଲା । ଆଉ କିଛି ସମୟ ପରେ ସେମାନଙ୍କ ଦେହର ସାଞ୍ଜୁ ଦେଖାଗଲା । ପ୍ରତ୍ୟେକଙ୍କ ଡାହାଣ ହାତରେ ଖଣ୍ଡା ଓ ବାଁ ହାତରେ ଢାଲ । ଜାସନ ଆଶ୍ଚର୍ଯ୍ୟ ହୋଇ ଚାହିଁଥାନ୍ତି । ଅଳ୍ପ ସମୟ ମଧ୍ୟରେ ସମଗ୍ର ପଡ଼ିଆଟି ଅସ୍ତ୍ରଧାରୀ ସୈନ୍ୟରେ ପୂରିଗଲା । ପ୍ରତି ଦାନ୍ତ ଗୋଟିଏ ଲେଖାଏଁ ସୈନ୍ୟ ହୋଇ ଯୁଦ୍ଧ କରିବାକୁ ବାହାରିପଡ଼ିଲେ ।

ଏହି ସୈନ୍ୟମାନେ ଚିତ୍କାର କରି ଉଠିଲେ, "ଶତ୍ରୁ କାହିଁ ? ଆମେ ତାକୁ ମାରି ଶେଷ କରିଦେବୁ । ଯୁଦ୍ଧରେ ଶତ୍ରୁକୁ ମାରିବୁ ବା ନିଜେ ମରିବୁ, ଏଇ ଆମର ପ୍ରତିଜ୍ଞା । ଆସ ଭାଇ-

ମାନେ ! ଶତ୍ରୁ ଉପରେ ମାଡ଼ିଯିବା । ଯୁଦ୍ଧରେ ଜିଣିବା ବା ମରିବା ।" ଏହିପରି କହି ସେମାନେ ପଡ଼ିଆଯାକ ଦୌଡ଼ିଲେ ।

ଜାସନ ଦୂରରେ ରହି କିପରି ଏହି ସୈନ୍ୟମାନଙ୍କୁ ବିନାଶ କରିବେ ତାହା ଚିନ୍ତା କରୁଥିଲେ । ତାଙ୍କ ଉପରେ ଦୃଷ୍ଟି ପଡ଼ିଲା-କ୍ଷଣି ସୈନ୍ୟମାନେ ତାଙ୍କୁ ଶତ୍ରୁ ମନେକରି ତାଙ୍କ ଉପରକୁ ମାଡ଼ି ଆସିଲେ । ମିଡ଼ିଆ ଏ ଅବସ୍ଥା ଦେଖି ଜାସନଙ୍କ ହାତକୁ ଖଣ୍ଡେ ପଥର ବଢ଼ାଇ ଦେଇ କହିଲେ, "ଶୀଘ୍ର ଏ ପଥର ଖଣ୍ଡିକ ସୈନ୍ୟଦଳ ଉପରକୁ ଫିଙ୍ଗିଦିଅ ।" ଜାସନ ପଥରଟି ଫିଙ୍ଗି ଦେବାରୁ ତାହା ଜଣକର ଟୋପିରେ, ତାପରେ ଜଣକର ଢାଲରେ ଓ ଶେଷରେ ଅନ୍ୟ ଜଣକର ନାକରେ ବାଜି ତଳେ ପଡ଼ିଲା । ପ୍ରତ୍ୟେକ ସୈନ୍ୟ ମନେକଲା ଯେ ତା ପାଖ ସୈନ୍ୟ ତା' ଉପରକୁ ପଥର ଫିଙ୍ଗିଛି । ଏଥିରୁ ସୈନ୍ୟମାନଙ୍କ ଭିତରେ କଳି ଲାଗିଲା । ଶେଷରେ ସବୁ ସୈନ୍ୟ ଆପଣା ଆପଣା ଭିତରେ ଯୁଦ୍ଧ କରିବାକୁ ଲାଗିଲେ । ଏପରି ଭୀଷଣ ଯୁଦ୍ଧ କେବେ ଦେଖା ନଥିଲା । ସାମାନ୍ୟ ପଥର ଖଣ୍ଡେ କାହୁଁ ପଡ଼ିଲା, ସେ କଥା ନ ବୁଝି ଆପଣା ଆପଣା ଭିତରେ ଯୁଦ୍ଧ କରି ମରିବା ଘୋର ମୂର୍ଖତା; କିନ୍ତୁ ସୈନ୍ୟମାନେ ତାହା ନଭାବି ଯୁଦ୍ଧରେ ମାତିଥାନ୍ତି । ଏଣେ ଜାସନ ସେମାନଙ୍କର ନିର୍ବୋଧତା ଦେଖି ମନେ ମନେ ହସୁଥାନ୍ତି ।

ଅଳ୍ପ ସମୟ ମଧ୍ୟରେ ସବୁ ସୈନ୍ୟ ସେହି ପଡ଼ିଆରେ ମରି ପଡ଼ିଲେ । କେବଳ ଜଣେ ସୈନ୍ୟ ମଲାପରି ପଡ଼ିଥିଲେହେଁ ମରି ନ ଥିଲା । ସେ ପାଟିକଲା, "ଆମର ଜୟ ହୋଇଛି । କାଳକାଳକୁ ଆମର ନାଆଁ ରହିଯିବ ।" କିଛି ସମୟ ପରେ ସେ ମଧ୍ୟ ମରି ଶୋଇଲା । ମିଡ଼ିଆ ଜାସନଙ୍କୁ କହିଲେ, "ଦେଖିଲ, ସୈନ୍ୟଗୁଡ଼ାକ କି ନିର୍ବୋଧ । କିଛି କାରଣ ନ ଥାଇ ଅନେକ ଲୋକ ଏହିପରି ଯୁଦ୍ଧ

କରି ଆପଣାର ସର୍ବନାଶ କରନ୍ତୁ ।" ଏହା ଶୁଣି ଜାସନ କହିଲେ, "ଲୋକଗୁଡ଼ାକ ଆପଣା ଭିତରେ ଯୁଦ୍ଧ କରିବାର ଦେଖି ମୋ ମନରେ ଦୁଃଖ ହେଲା । ଏତେ ଲୋକଙ୍କୁ ମରଣ ମୁହଁକୁ ଠେଲି ଦେଇ ସୁନାର ଲୋମ ନେବାରେ କିଛି ଲାଭ ଥିଲାପରି ମୋର ମନେହେଉନାହିଁ ।"

ମିଡ଼ିଆ କହିଲେ, "ହୁଏତ କାଲି ସକାଳକୁ ତୁମେହିଁ କହିବ ଯେ ସେମାନଙ୍କର ମରିବା ଠିକ୍ ହୋଇଛି । ସେ କଥା ନଭାବି ଆଗେ ତୁମର କାମ କର । ରାଜାଙ୍କ ପାଖକୁ ଯାଇ ଜଣାଇଦିଅ ଯେ ତାଙ୍କ ହୁକୁମ ଅନୁସାରେ କାମ ହୋଇସାରିଛି ।"

ଜାସନ ରାଜାଙ୍କ ପାଖକୁ ଯାଇ ସେହିପରି କହିଲେ; କିନ୍ତୁ ରାଜା ଏଥିରେ ସନ୍ତୁଷ୍ଟ ନ ହୋଇ ବିରକ୍ତ ହୋଇ ଉଠିଲେ । ସେ କହିଲେ, "ତୁମେ ଏକୁଟିଆ ଏ କାମ କରି ପାରି ନଥାନ୍ତ । ତୁମକୁ ମୋ ଝିଅ ମିଡ଼ିଆ ତାର ମନ୍ତ୍ର ବଳରେ ସାହାଯ୍ୟ କରିଛି । ତା ହୋଇ ନ ଥିଲେ ତୁମେ ଏତେବେଳକୁ ପାଉଁଶ ହୋଇସାରିଥାନ୍ତ । ମୁଁ ତୁମକୁ ମନା କରୁଛି, ସୁନାଲୋମ ଆଣିବାପାଇଁ ଆଉ ଚେଷ୍ଟା ନ କରି ଚାଲିଯାଅ । ତାହା ନୋହିଲେ ତୁମକୁ ଘୋର ବିପଦରେ ପଡ଼ିବାକୁ ହେବ । ତୁମର ଓ ତୁମ ସାଥିମାନଙ୍କର ପ୍ରାଣ ଉପରେ ବାଧା ପଡ଼ିଥିପାରେ । ମୋ କଥା ମାନି ଚାଲିଯାଅ ।"

ଏକଥା ଶୁଣି ଜାସନଙ୍କ ମନରେ ଯେତିକି ଦୁଃଖ ସେତିକି ରାଗ ହେଲା । ରାଜା ଯାହା କହିଲେ ତାହା ଜାସନ ମିଡ଼ିଆଙ୍କ ପାଖେ ଆସି ପ୍ରକାଶ କଲେ । ମିଡ଼ିଆ କହିଲେ, "ବାପାଙ୍କର ବିଚାର ସବୁ ମୁଁ ଜାଣେ । ତୁମ ଜାହାଜରେ ନିଆଁ ଲଗାଇ ଦେଇ ତୁମକୁ ଓ ତୁମର ସାହସୀ ସଙ୍ଗୀମାନଙ୍କୁ ମାରିଦେବା ତାଙ୍କ ଇଚ୍ଛା । ମୁଁ ତୁମକୁ ଯଥାସାଧ୍ୟ ସାହାଯ୍ୟ କରୁଛି । ତୁମେ ଅତି ଶୀଘ୍ର ଯାଇ ସୁନାର

ଲୋମ ନେଇଆସ । ଗଛ ନ ପାହୁଣୁ ଏ କାମ ଶେଷ କରି ଭୋରରୁ ଜାହାଜ ଛାଡ଼ିଦିଅ ।"

ଅନ୍ଧାର ହୋଇ ଆସିଥିଲା । ମିଡ଼ିଆ ଓ ଜାସନ ଦୁହେଁଯାକ ଗଛଲତା ମଧ୍ୟରେ ଲୁଚି ଲୁଚି ଯାଇ ଗୋଟିଏ ତୋଟାରେ ପହଞ୍ଚିଲେ । ସବୁଆଡ଼ ଅନ୍ଧାର ହେଲେହେଁ ତୋଟାଟି ଆଲୁଅରେ ଝଲମଲ ହେଉଥିଲା । ଗୋଟିଏ ଗଛ ଉପରେ ସୁନାର ଲୋମ ଝୁଲୁଥିଲା । ତାହାରି ତେଜରେ ତୋଟାସାରା ଆଲୁଅ ହୋଇ ଯାଇଥିଲା ।

ଜାସନ ଅଧୀର ହୋଇ ସୁନାର ଲୋମ ଆଣିବା ପାଇଁ ଧାଇଁଯାଉଥିଲେ; କିନ୍ତୁ ମିଡ଼ିଆ ତାଙ୍କୁ ଧରିପକାଇ କହିଲେ, "ଟିକିଏ ଅପେକ୍ଷା କର । ଗଛ ମୂଳେ କିଏ ଜଗି ରହିଛି, କଣ ଭୁଲିଗଲ ? ରହ, ମୁଁ ତୁମ ସଙ୍ଗରେ ଯିବି ।" ଏହା କହି ସେ ଆଉ ଗୋଟିଏ ସୁନା ଫରୁଆ ଧରି ବାହାରିଲେ ।

ଏହି ସମୟରେ ଗୋଟିଏ ହରିଣ ସେ ଗଛ ପାଖରେ ଦଉଡ଼ିଗଲା । ମୁହୂର୍ତ୍ତକ ଭିତରେ ଗଛ ମୂଳର ସେ ରାକ୍ଷସଟା ମୁଣ୍ଡ ଲମ୍ବାଇ ସେ ହରିଣଟାକୁ ଗିଳିଦେଲା । ରାକ୍ଷସ ମୁହଁଟା ମେଲା କଲାବେଳେ ତାହା ରଜାଘର ଫାଟକ ପରି ବଡ଼ ଦେଖାଯାଉଥିଲା । ଏହା ଦେଖି ଜାସନଙ୍କର ରକ୍ତ ପାଣି ହୋଇଗଲା । ସାହସ ବାନ୍ଧି ସେ ରାକ୍ଷସକୁ ମାରିବା ପାଇଁ ଖଣ୍ଡା ବାହାରକଲେ ।

ମିଡ଼ିଆ ପୁଣି ଜାସନଙ୍କ କାନ ପାଖରେ କହିଲେ, "ଏତେ ତରତର ହୁଅ ନାହିଁ । ମୁହୂର୍ତ୍ତେ ଅପେକ୍ଷା କର ।" ବୋଧହୁଏ ଏଇ ଫୁସ୍ ଫୁସ୍ କଥାର ଶବ୍ଦ ରାକ୍ଷସ ଶୁଣିପାରିଲା । ସେ ମୁହଁ ମେଲାକରି ଭୀଷଣ ଦାନ୍ତ ଯାଏ ତାର ମୁଣ୍ଡଟା ଲମ୍ବାଇ ଦେଲା । ସଙ୍ଗେ ସଙ୍ଗେ ମିଡ଼ିଆ ତାଙ୍କ ଫରୁଆରୁ ଗୁଡ଼ିଏ ବଟିକା କାଢ଼ି ତା ପାଟି ଭିତରକୁ

ପକାଇଦେଲେ । ଗୃହ୍ମୁଁ ଗୃହ୍ମୁଁ ରାକ୍ଷସଟା ଆଖିବୁଜି ଶୋଇପଡ଼ିଲା । ମିଡ଼ିଆ ଜାସନଙ୍କୁ ବୁଝାଇଦେଇ କହିଲେ, "ଏହା ଏକ ପ୍ରକାର ନିଦ ଔଷଧ । ତାକୁ ଖାଇ ରାକ୍ଷସଟା ଶୋଇପଡ଼ିଛି । ଇଚ୍ଛା କରିଥିଲେ ମୁଁ ତାକୁ ଔଷଧ ଦେଇ ମାରିପାରିଥାନ୍ତି; କିନ୍ତୁ ବେଳେ ବେଳେ ଏଭଳି ରାକ୍ଷସମାନେ ବହୁତ କାମ କରନ୍ତି । ତେଣୁ ତାକୁ ମାରିଲି ନାହିଁ । ଏବେ ତୁମେ ଶୀଘ୍ର ଯାଇ ସୁନାର ଲୋମ ନେଇଆସ ।"

ଜାସନ ସୁନାର ଲୋମ ନେଇ ଆସି ଜାହାଜ ପାଖରେ ପହଞ୍ଚିଲେ । ବାଟରେ ସେହି ବୁଢ଼ୀ ସଙ୍ଗେ ଦେଖାହେଲା । ତା ପାଖରେ ମୟୂରଟି ମଧ୍ୟ ଥିଲା । ସେ ଆନନ୍ଦରେ ଜାସନଙ୍କୁ ଆଶୀର୍ବାଦ କରି ଜାହାଜ ପର୍ଯ୍ୟନ୍ତ ସଙ୍ଗରେ ଆସିଲା । ସେତେବେଳକୁ ପୂର୍ବ ଦିଗରେ ସିନ୍ଦୂର ଫାଟି ଆସୁଥିଲା । ଜାହାଜର ଆଗରେ ଥିବା ମୂର୍ତ୍ତି ଡାକିଲା, "ଜାସନ, ଶୀଘ୍ର ଜାହାଜ ଉପରକୁ ଉଠିଆସ ।"

ଜାସନ ମିଡ଼ିଆଙ୍କୁ ଧନ୍ୟବାଦ ଜଣାଇ ଜାହାଜରେ ବସିଲେ । ତାଙ୍କର ସଙ୍ଗୀମାନେ ସୁନାର ଲୋମ ଦେଖି ଆନନ୍ଦରେ ଚିତ୍କାର କରି ଉଠିଲେ । ଅର୍‌ଫିଅସ ବୀଣା ବଜାଇଲେ ଓ ଜାହାଜ ପବନ ବେଗରେ ଚାଲିଲା । ଯଥା ସମୟରେ ଜାସନ ନିଜ ଦେଶରେ ପହଞ୍ଚିଲେ ।

———

# ଏଣ୍ଟିଅସ ଓ ବାମନଜାତି

ହଜାର ହଜାର ବର୍ଷ ତଳେ ଏଣ୍ଟିଅସ୍ ବୋଲି ଗୋଟିଏ ମଣିଷ ଥିଲା । ସେ ଆକାରରେ ଯେକୌଣସି ଗଛଗଠାରୁ ମଧ୍ୟ ବଡ଼ ହେବ । ତା ଦେହରେ ବହୁତ ବଳ, କିନ୍ତୁ ତାର ସ୍ୱଭାବଟି ଭଲ । ତା ପାଖରେ ରହୁଥିଲେ ଲକ୍ଷ ଲକ୍ଷ ଟିକି ଟିକି ମଣିଷ । ଏଭଳି ଶ୍ରେଷ୍ଠ ଶ୍ରେଷ୍ଠ ମଣିଷ କେହି ଦେଖି ନ ଥିବେ, କି ଏଣ୍ଟିଅସ ଭଳି ବଡ଼ ମଣିଷ କେହି ଦେଖି ନ ଥିବେ ।

ଏଣ୍ଟିଅସ ଓ ଏହି ବାମନଜାତିର ଲୋକେ ଏକ ମାଆ ପୃଥିବୀ ଭିତରୁ ଜନ୍ମ । ତେଣୁ ଏଣ୍ଟିଅସ ବଡ଼ ଭାଇ, ବାମନମାନେ ସାନଭାଇ । ଆଫ୍ରିକା ମହାଦେଶର ଗୋଟିଏ ରାଜ୍ୟରେ ସମସ୍ତେ ରହୁଥାନ୍ତି । ବଡ଼ ଭାଇ ସାନ ଭାଇମାନଙ୍କୁ ଭାରି ସ୍ନେହ କରୁଥିଲା । ସେମାନଙ୍କର ଦିନ ସୁଖରେ କଟିଯାଉଥିଲା ।

ବଡ଼ଭାଇ ଏତେ ଉଚ୍ଚ ଯେ ସେ ଠିଆ ହେଲାବେଳେ ତା ମୁଣ୍ଡଟା ଆକାଶରେ ଲାଗିଲାପରି ଜଣାଯାଏ । ସାନଭାଇମାନେ ଦୂରବୀକ୍ଷଣ ଯନ୍ତ୍ର ନ ଧରିଲେ ତା ମୁଣ୍ଡ ଦେଖିପାରନ୍ତି ନାହିଁ । କୁହୁଡ଼ି ପଡ଼ୁଥିଲା ବେଳେ ବହୁ କଷ୍ଟରେ କେବଳ ତା ଗୋଡ଼ ଦେଖିହୁଏ । ତାର ଗୋଟିଏ ମାତ୍ର ଆଖି, ଗୋଟାଏ ବଡ଼ ଶଗଡ଼ ଚକ ପରି କପାଳ ମଝିରେ ଜଳଜଳ ହେଉଥାଏ । ଦେହକୁ ବୁହିଁ ହାତ ଗୋଡ଼ ।

ଏଣ୍ଟିଅସ ଗ୍ଭଲବେଲେ ଗୋଟାଏ ପର୍ବତ ମାଡ଼ ଆସିଲା ପରି ବୋଧହୁଏ ।

ମାତ୍ର ବାମନମାନଙ୍କ ଆକାର ଖୁବ୍ ଛୋଟ । ସେମାନଙ୍କ ଭିତରେ କେହି ଛଅ ସାତ ଇଞ୍ଚ ଉଚ୍ଚ ହେଲେ ତାକୁ ସବୁଠାରୁ ଡେଙ୍ଗା ଲୋକ ବୋଲି ସେମାନେ ମନେକରନ୍ତି । ସେମାନଙ୍କ ଘରଗୁଡ଼ିକ ଦେଖିବାକୁ ଛୋଟ ଚଢ଼େଇ ପିଞ୍ଜରା ପରି । ସେମାନଙ୍କ ସହରର ସବୁଠାରୁ ବଡ଼ ରାସ୍ତାର ଓସାର ତିନି ଫୁଟରୁ ବେଶୀ ନ ଥିଲା । ସବୁଠାରୁ ବଡ଼ ଦେଉଳର ଉଚ୍ଚତା ଚୌଦ ଫୁଟ ହେବ । ସେମାନେ ଛୋଟିଆ ବଳଦ ଯୋଚି ଛୋଟିଆ ହଳରେ ଜମି ଚାଷ କରୁଥିଲେ; ଫସଲ ଅମଳ କରି ଖାଉଥିଲେ । ଆକାରରେ ଛୋଟ ହେଲେ ସୁଦ୍ଧା ସେମାନେ ଆମରି ଭଳି ସବୁ କାମ କରି ନିଜ ନିଜ ଅଭାବ ମେଣ୍ଟାଉଥିଲେ । ସେମାନଙ୍କ ଭିତରେ ସୈନ୍ୟ ମଧ୍ୟ ଥିଲେ ଓ ତରବାରି, ଢାଲ, ଧନୁଶର ପ୍ରଭୃତି ବ୍ୟବହାର କରୁଥିଲେ । ଜଣେ ସୈନ୍ୟର ତରବାରି ତିନି ଇଞ୍ଚରୁ ବେଶି ଲମ୍ବ ନ ଥିଲା । ଏମାନଙ୍କର ପିଲାମାନେ ବି ସେହିପରି ଛୋଟ ଥିଲେ । ଆମର ଗୋଟିଏ ଜୋତାରେ ଦଶ ପନ୍ଦର ଜଣ ବାମନ ପିଲା ନିଶ୍ଚିନ୍ତରେ ଶୋଇପାରନ୍ତେ ।

ଏଣ୍ଟିଅସ ଗୋଟିଏ ଶାଳ ଗଛର ଗଣ୍ଡିକୁ ହାତରେ ବାଡ଼ିପରି ଧରି ଚାଲେ । ଏଇ ବାଡ଼ିଟି ପଚାଶଫୁଟ ଉଚ୍ଚ ଓ ତାର ଗୋଲେଇ ଆଠଫୁଟ ହେବ ।

ବାମନମାନେ ବଡ଼ଭାଇ ସାଙ୍ଗରେ କଥାବାର୍ତ୍ତା କରିବାକୁ ଭଲପାଆନ୍ତି । ସେମାନେ ଠିଆହୋଇ ଉପରକୁ ଚାହିଁ ପାଟି କରନ୍ତି, "ଭାଇ କେମିତି ଅଛ ?" ଖୁବ୍ ପାଟି ନକଲେ ଭାଇଙ୍କ କାନକୁ ସେ କଥା ଶୁଣାଯାଏ ନାହିଁ । କେହି କେହି ଭଲ ଶୁଣାଯିବ ବୋଲି ଚୁଙ୍ଗା ଧରି କଥାବାର୍ତ୍ତା କରନ୍ତି । ଏଣ୍ଟିଅସ ସେମାନଙ୍କ କଥା ଶୁଣି

ହସି ହସି କହେ, "ହଁ, ମୁଁ ବେଶ୍ ଭଲ ଅଛି । ତୁମେ ଭଲ ଅଛ ତ ?" ଏଣ୍ଡ୍ରିଅସ କଥା କହିଲେ ତା ସ୍ୱର ଘଡ଼ଘଡ଼ି ପରି ଶୁଣାଯାଏ । କେହି କେହି ସେ ସ୍ୱରରେ କାନ ହୋଇଯାଇଥିବାର ଶୁଣାଅଛି । ଘରଗୁଡ଼ାକ ଥରିଯାଏ, ମାତ୍ର କୁଡ଼ା ଓ ପକ୍ଷୀ ପରରେ ତିଆରି ହୋଇଥିବାରୁ ଭାଙ୍ଗି ପଡ଼େ ନାହିଁ ।

ଏଣ୍ଡ୍ରିଅସ ବଗିଚାରେ ଫୁଙ୍କିଦେଇ ହଜାର ହଜାର ଲୋକଙ୍କୁ ଉଡ଼ାଇ ଦେଇ ପାରନ୍ତା; ପାଦ ପକାଇ ଦେଲେ ମାତ୍ରେ ଗୋଟାଏ ଗୋଟାଏ ସହର ଚୂନା କରିପାରନ୍ତା, କିନ୍ତୁ ସେ ତାର ଛୋଟ ଭାଇମାନଙ୍କୁ ଭାରି ଭଲ ପାଏ; ସେମାନଙ୍କର ଯେପରି କିଛିହେଲେ ଅନିଷ୍ଟ ନ ହୁଏ, ସେଥିପାଇଁ ସାବଧାନ ଥାଏ । ବୁଲିଲାବେଳେ ତଳକୁ ଚାହିଁ ଖୁବ୍ ସାବଧାନରେ ପାଦ ପକାଇବାକୁ ହୁଏ— କାଳେ କେଉଁଠି କିଏ ଯାଉଥିବ କି ପିଲାଏ ଖେଳୁଥିବେ । ଏଣ୍ଡ୍ରିଅସ ବାମନମାନଙ୍କୁ ଯେପରି ଆଦର କରୁଥିଲା, ସେମାନେ ତାକୁ ମଧ୍ୟ ସେହିପରି ଆଦର କରୁଥିଲେ ।

ବାମନମାନଙ୍କର ଦରକାର ପଡ଼ିଲାମାତ୍ରେ ଏଣ୍ଡ୍ରିଅସ ସାହାଯ୍ୟ କରିବାକୁ ବାହାରିପଡୁଥିଲା । ବେଶି ଖରା ହେଉଥିଲେ ସେ ଠିଆ ହୋଇଯାଏ ଓ ତା ଛାଇ ତଳେ ହଜାର ହଜାର ଲୋକ ଆଶ୍ରୟ ନେଇଯାନ୍ତି । ଜାହାଜ ଚଳାଇବାକୁ ଲୋକେ ନ ପାରିଲେ, ସେ ଟିକିଏ ଫୁଙ୍କି ଦେଉଥିଲା । କେଉଁଠି କଳ ଚଳାଇ ନ ପାରିଲେ ସେମାନେ ଏଣ୍ଡ୍ରିଅସକୁ ଡାକୁଥିଲେ । ତାର ଆଙ୍ଗୁଠି ଟିକିଏ ବାଜିଲାମାତ୍ରେ କଳ ଚାଲିଲା । ସେହିପରି କଠିନ କାମ ନ ପଡ଼ିଲେ ସେମାନେ ଏଣ୍ଡ୍ରିଅସର ସାହାଯ୍ୟ ନେଉନଥିଲେ । ସେମାନେ ଆପେ ନିଜ କାମ କରିଯାଉଥିଲେ ।

ଯେତେବେଳେ ଏଣ୍ଡିଅସର ଗୃହପାଖେ ବାମନମାନେ ବୁଲୁଥାନ୍ତି, ତାଙ୍କୁ ତଳେ ପିମ୍ପୁଡ଼ି ଚାଲୁଥିବା ପରି ମନେହୁଏ । ସେ ଶୋଇଥିବାବେଳେ ପିଲମାନେ ନିଶ୍ୱାସରେ ତା ମୁହଁ ଉପରକୁ ଚଢ଼ି ଦାଢ଼ି ଭିତରେ ଲୁଚକାଳି ଖେଳନ୍ତି । ଟୋକାମାନେ ବାଜି ରଖନ୍ତି—କିଏ ବଡ଼ ଭାଇଙ୍କ ଆଖି ଗୃହପାଖେ ଆଗ ଦଉଡ଼ି ଆସିପାରିବ । କେହି କେହି ପିଲା ତା ଆଙ୍ଗୁଠି ସନ୍ଧିରେ ଲୁଚିଯାନ୍ତି ।

ପୂର୍ଣ୍ଣ୍ୟ ପର୍ବ ଦିନ ଖେଳ କୌତୁକ ହୁଏ । ଏଣ୍ଡିଅସ ଶୋଇ-ପଡ଼ିଲେ ଗୋଟିଏ ପାହାଡ଼ପରି ଦିଶେ । ତାର ଉପରେ ଦୌଡ଼ ପ୍ରତିଯୋଗିତା ହୁଏ । କେହି କେହି ଅତି ସାହସୀ ବାମନ ତାର ଓଠ ଉପରେ ଠିଆହୋଇ ମୁହଁ ଭିତରକୁ ଚାହେଁ । ସେ ଟିକିଏ ପାଟି ଫାକୁ ଫାକୁ କଲାକ୍ଷଣି ସେହି ବୀର ପାଟିକରି ପଳାଇଆସେ । ବେଳେ ବେଳେ କେହି ଚଗଲା ଏଣ୍ଡିଅସକୁ କହେ, "ଭାଇ, ତମ ଚମଡ଼ାଟା କେତେ ମୋଟ ?" ଏଣ୍ଡିଅସ ଉତ୍ତର କରେ, "ତୁ ପରୀକ୍ଷା କରି ଦେଖୁନୁ ।" ସେ ତା ଖଣ୍ଡାଟା ଆଣି ଏଣ୍ଡିଅସ ଦେହରେ ଭୁଷିଦିଏ । ଅବଶ୍ୟ ଏଥିରେ ତାର କିଛି କ୍ଷତି ହୁଏ ନାହିଁ; ଟିକିଏ ଚିମୁଟିବା ପରି ଲାଗେ । ଏମାନଙ୍କର ଏପରି ଖେଳ କୌତୁକରେ ଯେ କେହି ବିରକ୍ତ ହୋଇ ଉଠନ୍ତା; କିନ୍ତୁ ଏଣ୍ଡିଅସ ଆଦୌ ରାଗେ ନାହିଁ । ସାନଭାଇଗୁଡ଼ାକ ସାଥିରେ ଏଭଳି ଖେଳିବାରେ ତାର ଆନନ୍ଦ ।

ବାମନଗୁଡ଼ିକ ଆକାରରେ ଛୋଟ ହେଲେ କଅଣ ହେବ; ସେମାନଙ୍କ ପେଟ ଭିତରେ ବଡ଼ଭାଇ ପ୍ରତି ଭାରି ସ୍ନେହ । ସେମାନେ କହନ୍ତି, "ଆମ ଭାଇଭଳି କେହି ଦୁଃଖୀ ନାହାନ୍ତି । ଜଣେ ସାଙ୍ଗସାଥି ନାହିଁ ଯେ ଟିକିଏ ଦୁଃଖସୁଖ ହେବ । ପାଖରେ ସାହାଯ୍ୟ କରିବାକୁ କେହି ନାହିଁ । ବିଚାରର ମନରେ କେତେ କଷ୍ଟ ହେଉନଥିବ ?

ଆମେ ତା ମନ ଭୁଲାଇବା ପାଇଁ ଚେଷ୍ଟା ନ କଲେ ହେବ କପରି ?"

ଦିନେ ଏଣ୍ଡିଅସ ତା ପାଖରେ ବାଡ଼ିଖଣ୍ଡି ରଖିଦେଇ ଶୋଇଥିଲା । ଦୁଇ ଚାରିହଜାର ବାମନ ଏଣେତେଣେ ଆଖପାଖରେ ବୁଲୁଥିଲେ । ତା ଦେହଟା ରାଜ୍ୟର ଅଧେ ମାଡ଼ିବସିଥିଲା । ତା ଘୁଙ୍ଗୁଡ଼ି ଶବ୍ଦ ମେଘ ଗର୍ଜନ ପରି ଶୁଭୁଥିଲା । ଜଣେ ବାମନ ତା କାନ୍ଧ ଉପରେ ଚଢ଼ି ଦୂରବୀକ୍ଷଣ ଯନ୍ତ୍ରରେ ଚାରିଆଡ଼ର ଦୃଶ୍ୟ ଦେଖୁଥିଲା । ଏକ ପାଖରେ ସେ ଗୋଟିଏ ଅଦ୍ଭୁତ ଦୃଶ୍ୟ ଦେଖିଲା । ଗୋଟାଏ ପର୍ବତ ଆଗକୁ ଆଗକୁ ଆସୁଥିବାପରି ତାକୁ ଜଣା ପଡ଼ିଲା । ସେ ଦିଗରେ କୌଣସି ପର୍ବତ ନ ଥିଲା—ପର୍ବତଟାଏ ଆସିଲା କାହୁଁ ! ସେଇଟା ପୁଣି ଚାଲୁଛି କପରି ?

ଲୋକଟି ସେହିପରି ଚାହିଁରହିଥାଏ । କିଛି ସମୟ ପରେ ପର୍ବତଟା ଟିକିଏ ପାଖକୁ ଆସିବାରୁ ସେ ଦେଖିଲା ଯେ ଏଇଟା ପର୍ବତ ନୁହେଁ; ଏଣ୍ଡିଅସ ଭଳି ଗୋଟାଏ ବଡ଼ ମଣିଷ । ଉଚ୍ଚତାରେ ଏଣ୍ଡିଅସଠାରୁ ଟିକିଏ କମ୍ ହେଲେହେଁ ଖୁବ୍ ବଡ଼ ମଣିଷଟାଏ ।

ସେ ଲୋକଟି ଏଣ୍ଡିଅସର କାନ ପାଖକୁ ଦଉଡ଼ିଯାଇ ଡାକ ପକାଇଲା, "ଭାଇ, ଉଠ, ଉଠ । ତମରି ଭଳି କିଏ ଗୋଟାଏ ଆସୁଛି ।" ବହୁତ ଡାକ ପରେ ଏଣ୍ଡିଅସ କହିଲା, "ଓଃ, କାହିଁକି ଗୁଣୁଗୁଣୁ ହେଉଛ । ଦେଖୁନ, ମତେ ନିଦ ମାଡୁଛି ।"

ଏଣେ ସେ ଲୋକଟା ପାଖେଇ ଆସୁଥାଏ । ତା ମୁଣ୍ଡର ଟୋପି ଉପରେ ସୂର୍ଯ୍ୟକିରଣ ପଡ଼ି ଚକ୍ ଚକ୍ ଦିଶୁଥାଏ । ତା ଦେହରେ ସାଞ୍ଜୁ ମଧ୍ୟ ସେହିପରି ଚକ୍‌ଚକ୍ କରୁଥାଏ । ପିଠି ଉପରେ ସେ ଗୋଟାଏ ସିଂହର ଛାଲ ପକାଇଥାଏ । ଡାହାଣ କାନ୍ଧରେ ସେ

ଯେଉଁ ଗଦା ଧରିଥିଲା, ସେଇଟା ଏଣ୍ଟିଅସର ବାଡ଼ଠାରୁ ଆହୁରି ଲମ୍ବ । ଅଣ୍ଟାରେ ଗୋଟାଏ ଖଣ୍ଡା ଓହଳିଥାଏ ।

ଏପରି ଏକ ପ୍ରକାଣ୍ଡ ମଣିଷକୁ ଦେଖି ବାମନ ଜାତିର ଲୋକେ ଚିତ୍କାର କରି ଉଠିଲେ । ହଜାର ହଜାର ଲୋକଙ୍କ ପାଟିରେ ମଧ୍ୟ ଏଣ୍ଟିଅସର ନିଦ ଭାଙ୍ଗୁ ନଥାଏ । କେତେଜଣ ତା କାନ ପାଖରେ ପାଟିକଲେ, "ହେ ବଡ଼ଭାଇ, ଚଞ୍ଚଳ ଉଠିପଡ଼ । ଓଃ, ତମେ କେଡ଼େ ଅଳସୁଆ । ଦେଖ ଗୋଟାଏ ଅସୁର ଆସୁଛି; ତୁମ ସାଥିରେ ଯୁଦ୍ଧ କରିବ ।"

ଏଣ୍ଟିଅସର ନିଦ ଅଳ୍ପ ଭାଙ୍ଗିଗଲା । ସେ କହିଲା, "ଓଃ, କେଡ଼େ ଖରାପ ଲୋକ । ମୁଁ ଟିକିଏ ଶୋଇ ପାରେ । ଯେ ଆସୁଛି, ଆସୁଥାଉ ।"

ଏଥି ମଧ୍ୟରେ ରାକ୍ଷସଟା ଖୁବ୍ ପାଖେଇ ଆସିଲାଣି । ସବୁ ବାମନ ଏକାବେଳକେ ପାଟିକରି ଉଠିଲେ, "ଭାଇ, ଚଞ୍ଚଳ ଉଠ । ରାକ୍ଷସଟା ତମଠାରୁ ବଳୁଆ ଦିଶୁଛି । ତା କାନ୍ଧଗୁଡ଼ାକ ଭାରି ଓସାରିଆ । ଏତେବେଳେ ଶୋଇଲେ ଆଉ ଚଳିବ ! ଶୀଘ୍ର ଉଠିପଡ଼ ।"

ଶେଷରେ ଏଣ୍ଟିଅସ ଆଖି ମଳି ମଳି ଉଠି ବସିଲା । ହାଇମାରି ଏପାଖ ସେପାଖକୁ ଚାହିଁଲା ।

ନିଦ ଭଲ ହୋଇ ଭାଙ୍ଗିଗଲା । ଏବେ ଏହି ନୂଆ ରାକ୍ଷସ ଉପରେ ତାର ନଜର ପଡ଼ିଲା । ସେ ଠେଙ୍ଗାଟା ଧରି କେତେ ପାହୁଣ୍ଡରେ ମାଡ଼ି ତା ଆଡ଼କୁ ତିନି ଘୁରିମାଇଲ ଚାଲିଗଲା ।

ଏଣ୍ଟିଅସ ଗର୍ଜି ଉଠିଲା, "ଆରେ ତୁ କିଏ ? ତୁ କାହିଁକି ଏଠିକି ଆସିଛୁ ?" କଥା ସାଙ୍ଗେ ସାଙ୍ଗେ ତା ଠେଙ୍ଗାଟା ହଲୁଥାଏ ।

ଅସୁର କିଛି ନ କହି ଠିଆହୋଇ ରହିଲା । ଏଣ୍ଟିଅସ ପୁଣି କହିଲା, "କିରେ, ତୋତେ କଅଣ ଶୁଭୁନାହିଁ ? ତୋ ନାଆଁ କଣ ? ତୁ ମୋ ରାଜ୍ୟରେ ପଶିଲୁ କାହିଁକି ?"

ଏବେ ଅସୁରର ତୁଣ୍ଡ ଫିଟିଲା । ସେ ଧୀର ସ୍ଥିର ସ୍ୱରରେ କହିଲା, "ମୁଁ ଦେଖୁଛି, ତୁ ବଡ଼ ଅଭଦ୍ର । ମୋର ଏଠୁ ଯିବା ଆଗରୁ ତୋତେ ଭଦ୍ରତା ଶିଖାଇଦେବି । ମୋ ନାଁ ହେଉଛି ହରକ୍ୟୁଲସ୍ । ମୁଁ ହେସ୍ପେରିଡ଼ସ ବଗିଚାକୁ ଯାଉଛି । ସେ ବଗିଚାରେ ସୁନାର ଆତଫଳ ଅଛି । ଆମ ରାଜାଙ୍କ ପାଇଁ ସେଥିରୁ ତିନୋଟି ଫଳ ଆଣିବି ।"

ହରକ୍ୟୁଲସ୍‌ର ବଳ କଥା ଏଣ୍ଟିଅସ ଆଗରୁ ଶୁଣିଥିଲା । ତା ଭଳି ବା ତା'ଠାରୁ ବଳୁଆ ହରକ୍ୟୁଲସ୍‌କୁ ଏଣ୍ଟିଅସର ଭାରି ଘୃଣା । ଏବେ ତାକୁ ଆଗରେ ଦେଖି ସେ ରାଗିଉଠି କହିଲା, "ନା, ଆଉ ଆଗକୁ ଯିବାକୁ ମୁଁ ତୋତେ ଛାଡ଼ି ଦେବି ନାହିଁ । ପଛକୁ ଫେରିଯିବାକୁ ମଧ୍ୟ ଦେବି ନାହିଁ ।"

ହରକ୍ୟୁଲସ କହିଲା, "ମୋର ଯୁଆଡ଼େ ଇଚ୍ଛା ମୁଁ ଯିବି । ତୁ ମତେ ବନ୍ଦ କରିବାକୁ କିଏ ? କପରି ଅଟକାଇ ରଖିବୁ ଦେଖିବି ।"

ଏଣ୍ଟିଅସ ନିଜକୁ ଖୁବ୍ ବଳୁଆ ମନେକରୁଥିଲା । ସେଥିର ଏକ ବିଶେଷ କାରଣ ମଧ୍ୟ ଥିଲା । ସେ ହେଉଛି ପୃଥିବୀ ମାତାଙ୍କ ପୁଅ । ତାକୁ ଶ୍ରଦ୍ଧାକରି ପୃଥିବୀ ମାତା ବର ଦେଇଥିଲେ, ତୁ ଯେତେଥର ମୋତେ ଛୁଇଁଥିବୁ, ତୋର ବଳ ପ୍ରତିଥର ଦଶଗୁଣ ଲେଖାଏଁ ବଢ଼ିଯାଉଥିବ । ଏହି ହେତୁରୁ ଏଣ୍ଟିଅସ ଦଶପନ୍ଦରଶ ମାଇଲ ଚାଲିଗଲେ, ହାଲିଆ ହୋଇ ପଡ଼େ ନାହିଁ; ଓଲଟି ତାର ବଳ ଶହେ ଦୁଇଶ ଗୁଣ ବଢ଼ିଯାଏ । ସେହିପରି ସେ ଭୂଇଁରେ ଶୋଇପଡ଼ିଲେ,

ଉଠିଲାବେଳକୁ ତାର ବଳ ବଢ଼ିଯାଇଥାଏ । ଏଥିରେ ଏଣ୍ଟିଅସ କାହାକୁ ଖାତର କରିବ କାହିଁକି ?

ହରକ୍ୟୁଲସ୍‌ର ଧମକ ଶୁଣି ଏଣ୍ଟିଅସର ରାଗ ବଢ଼ିଗଲା । ସେ କହିଲା, "ତୋତେ କିପରି ଅଟକାଇବ ? ମୋର ଏଇ ଠେଙ୍ଗାକୁ ଦେଖ । ଏଇଥିରେ ତୋ ମୁଣ୍ଡ ଛେଚି ଗୁଣ୍ଡା କରିଦେବି । ମୁଁ ବଳରେ ତୋ ଠାରୁ ପଚିଶ ଗୁଣ । ଥରେ ମାଟିକୁ ଗୋଇଠା ମାରିଦେଲେ ମୋ ବଳ ପାଞ୍ଚଶ ଗୁଣ ହୋଇଯିବ । ତୋତେ ଏପରି ପିଟିବି ଯେ, ଖଣ୍ଡା ଆଉ ଗଦା ଫିଙ୍ଗିଦେଇ ତୁ ମୋ ଶରଣ ପଶିବୁ, ମୋର ଆଉ ମୋ ଟିକି ଭାଇଙ୍କର ସେବା କରିବାକୁ ବାଧ୍ୟ ହେବୁ । ସେ ସିଂହ ଛାଲଟା ନେଇ ମୋ ହାତ ପାଇଁ ଯୋଡ଼ାଏ ଦସ୍ତାନା ତିଆରି କଲେ ହେବ ।"

ହରକ୍ୟୁଲସ୍ ସବୁ ଶୁଣି ନଶୁଣିଲା ପରି ରହିଥାଏ । ସେ କହିଲା "ଆଚ୍ଛା, ସିଂହ ଛାଲରେ ଦସ୍ତାନା କରିବୁ ପରା—ଆଗ ମୋ କାନ୍ଧରୁ ସେଇଟାକୁ ନେଲୁ ଦେଖି ?"

ଏଣ୍ଟିଅସ ଲମ୍ବ ଲମ୍ବ ପାହୁଣ୍ଡ ପକାଇ ହରକ୍ୟୁଲସ୍‌ର ଖୁବ୍ ପାଖରେ ପହଞ୍ଚିଗଲା । ସେ ଠେଙ୍ଗାରେ ପାହାରେ ପିଟିଲା ବେଳକୁ ହରକ୍ୟୁଲସ୍ ତା ଗଦାଟା ଦେଖାଇଦେଲା । ତେଣୁ ପାହାରଟା ତା ଦେହରେ ନ ବାଜି ଗଦାରେ ବାଜିଲା । ତହୁଁ ହରକ୍ୟୁଲସ୍ ତା ଗଦାରେ ଏଣ୍ଟିଅସର ମୁଣ୍ଡକୁ ଏପରି ପାହାରେ ପିଟିଲା ଯେ ସେ ତଳେ ପଡ଼ିଗଲା ।

ବଡ଼ଭାଇର ଏ ଦଶା ଦେଖି ବାମନମାନେ କାନ୍ଦିଉଠିଲେ । ପୃଥିବୀରେ ଯେ ତାଙ୍କ ଭାଇଠାରୁ କେହି ବଳୁଆ ଥାଇପାରେ, ଏହା ସେମାନେ କଳ୍ପନା କରି ନଥିଲେ । ଏବେ ସେମାନେ ହାହାକାର କରିବାକୁ ଲାଗିଲେ ।

ଏଣ୍ଟିଅସ ଏପରି ଏକ ପାହାରେ ଖାଇଲେ ସୁଦ୍ଧା ପୁଣି ଉଠି-ପଡ଼ିଲା । ତାର ବଳ ଦଶଗୁଣ ବଢ଼ି ଯାଇଥାଏ । ସେ ଠେଙ୍ଗା ଧରି ହରକ୍ୟୁଲସକୁ ପୁଣି ପିଟିବାକୁ ବସିଲା। ଏଥର ମଧ୍ୟ ଲକ୍ଷ ଠିକ୍ ରହିଲା ନାହିଁ । ଠେଙ୍ଗାଟା ହରକ୍ୟୁଲସର ଦେହରେ ନ ବାଜି ଭୂଇଁରେ ବାଜି କେତେ ଦୂର ଯାଏ ପୋତି ହୋଇଗଲା । ମାଟି ଭିତରୁ ସେ ଠେଙ୍ଗା-ଟାକୁ ଟାଣି ବାହାର କରୁ କରୁ ହରକ୍ୟୁଲସ ତାକୁ ଗଦାରେ ପିଟି ଦେଇ ଗଲା । ଏଣ୍ଟିଅସ ରାଗରେ ଏତେ ଗର୍ଜନ କଲା ଯେ ସେ ରାଜ୍ୟଟା ଥରି ଉଠିଲା । ବାମନମାନଙ୍କ କଥା କହିଲେ ନସରେ । ଏ ଦୁହିଁଙ୍କର ପିଟା ପିଟି, ଗର୍ଜନ ତର୍ଜନରେ ଭୂମିକମ୍ପ ହେବାରୁ ସେମାନଙ୍କର କେତେ ସହର ଭୂଇଁରେ ମିଶିଗଲା; କେତେ ଲୋକ ଭୟରେ ମୂର୍ଚ୍ଛା ହୋଇଗଲେ । ଆଉ କେତେ ଯୁଦ୍ଧ କରିବାକୁ ଡାକରା ଶୁଣିଲେ । ଲକ୍ଷ ଲକ୍ଷ ଲୋକଙ୍କର କୋଳାହଳ ଏ ଦୁହିଁଙ୍କର ରଡ଼ି ଭିତରେ ଉଭେଇ ଗଲା ।

ଏଥିମଧ୍ୟରେ ଏଣ୍ଟିଅସ ଠେଙ୍ଗାଟା ଭୂଇଁରୁ ବାହାର କରି ପୁଣି ପାହାରେ ପିଟିଲା । ମାତ୍ର ଏଥର ମଧ୍ୟ ହରକ୍ୟୁଲସ ତାର ଗଦାରେ ଠେଙ୍ଗାକୁ ଆଘାତ କଲା । ଫଳରେ ଏଣ୍ଟିଅସର ଠେଙ୍ଗା ଗୁଣ୍ଡ ହୋଇଗଲା । ସେ ଗୁଣ୍ଡ ଛିଟିକି ପଡ଼ିବାରୁ ଶହ ଶହ ଲୋକ ମରିଗଲେ । ଏଣ୍ଟିଅସ ଟିକିଏ ପଛକୁ ଘୁଞ୍ଚି ଆସିଲାବେଳକୁ ହରକ୍ୟୁଲସ ତାକୁ ଗଦାରେ ପିଟିବାରୁ ସେ ତଳେ ଗଡ଼ିପଡ଼ିଲା ।

ରାଗରେ ଏଣ୍ଟିଅସର ଆଖିଟା ନାଲି ପଡ଼ିଗଲା । ସେ ଭୂଇଁରୁ ଉଠିଲା ମାତ୍ରେ ଦୁଇ ଗୁଣ କୁଦା ଡେଇଁଲା । ଏହାଦ୍ୱାରା ତାର ବଳ ବଢ଼ି ଆସିଲା । ସେ ଗର୍ଜନ କରି ଡାକିଲା, "ଆ, ଆ, ତୁ କେତେ ଖାର ଦେଖିବି ।"

ହରକ୍ୟୁଲସ ଦେଖିଲା, ଏଣ୍ଟି ଅସକୁ ଭୂଇଁ ଉପରେ ପକାଇଲେ ଲାଭ ନାହିଁ । ଏଥିରେ ବରଂ ତାର ବଳ ବେଶି ହେଉଛି । ତେଣୁ ସେ ତାର ଗଦାଟା ତଳେ ଫିଙ୍ଗି ଦେଇ କହିଲା, "ତୋର ଠେଙ୍ଗାଟା ଭାଙ୍ଗି ଗଲାଣି । ଏଣିକ ଗଦା ଧରି ତୋ ସଙ୍ଗେ ଯୁଦ୍ଧ କଲେ ଅନ୍ୟାୟ ହେବ । ଆ, ତୋର ମୋର ମଲ୍ଲ ଯୁଦ୍ଧ କରିବା ।"

ଏଣ୍ଟି ଅସର ମଲ୍ଲ ଯୁଦ୍ଧରେ ଭଲ ନାଆଁ ଥିଲା । ସେ ବା ଡରିବ କାହିଁକି ? ସେ କହିଲା, "ମୁଁ କଅଣ ସେଥିକି ଡରୁଛି ? ମଲ୍ଲ ଯୁଦ୍ଧକୁ ଆ । ତୋତେ ଏପରି ପକେଇ ଦେବି ଯେ ଆଉ କେବେହେଲେ ଉଠିବୁ ନାହିଁ ।"

ସେ କୁଦା ମାରି ଡେଇଁପଡ଼ି ହରକ୍ୟୁଲସକୁ ମାଡ଼ିବସିବାକୁ ଗଲା । ସେତେବେଳକୁ ତାର ବଳ କେତେ ଗୁଣ ହୋଇଯାଇ ଥାଏ । ହରକ୍ୟୁଲସ ଭାରି ବୁଦ୍ଧିଆ । ସେ ସୁବିଧା ଜଣି ଥାଏ । ଏଣ୍ଟି ଅସ ତା ଆଡ଼କୁ ମାଡ଼ି ଆସିଲା ବେଳକୁ ସେ ଏଣ୍ଟି ଅସର ଅଣ୍ଟାକୁ ଧରି ମୁଣ୍ଡ ଉପରକୁ ଟେକିଦେଲା ।

ସେ ଏକ ବିଚିତ୍ର ଦୃଶ୍ୟ । ହରକ୍ୟୁଲସର ମୁଣ୍ଡ ଉପରକୁ କିଛି ଉଚ୍ଚରେ ଏଣ୍ଟି ଅସ ଗୋଟାଏ ପର୍ବତ ପରି ରହି ହାତଗୋଡ଼ ପିଟି ହେଉଥାଏ । କିନ୍ତୁ ହରକ୍ୟୁଲସ ତାକୁ ନଛାଡ଼ି ସେହିପରି ଧରିଥାଏ ।

ମାଟି ଉପର ଛାଡ଼ି ଶୂନ୍ୟରେ ଏତେ ସମୟ ରହିବାରୁ ଏଣ୍ଟି ଅସର ବଳ କମି ଆସିଲା । ହାତ ଗୋଡ଼ ଛାଟିବାକୁ ମଧ୍ୟ ତାର ବଳ ରହିଲା ନାହିଁ । ଅସଲ କଥା ହେଲା; ପ୍ରତି ପାଞ୍ଚମିନିଟରେ ଅନ୍ତତଃ ଥରେ ପୃଥିବୀକୁ ନ ଛୁଇଁଲେ ଏଣ୍ଟି ଅସର ବଳ ଦଶଭାଗରୁ ଭାଗେ ହୋଇଯାଏ । ଯେତେବେଳେ ଏଣ୍ଟି ଅସ ଏକବାରେ ଦୁର୍ବଳ ହୋଇ ପଡ଼ିଲା, ହାତଗୋଡ଼ ହଲେଇ ପାରିଲା ନାହିଁ, ସେତେବେଳେ

ହରକ୍ୟୁଲସ ତାକୁ ଦୂରକୁ ଫିଙ୍ଗିଦେଲା । ମାଇଲଏ ଦୂରରେ ସେ ଗୋଟାଏ ପାହାଡ଼ ପରି ପଡ଼ିଲା ଓ ତାର ପ୍ରାଣବାୟୁ ବାହାରିଗଲା ।

ବାମନ ଜାତିର ଲୋକେ ବଡ଼ ଭାଇଙ୍କର ଏ ଦଶା ଦେଖି କାନ୍ଦି ଉଠିଲେ; ସେମାନଙ୍କ ଆଖିରୁ ଧାର ଧାର ହୋଇ ଲୁହ ବୋହି ଗଲା । କିନ୍ତୁ ହରକ୍ୟୁଲସର ସେଆଡ଼େ ଦୃଷ୍ଟି ନାହିଁ । ସେମାନଙ୍କ କାନ୍ଦଣା ଶୁଣି ସେ ମନେକଲା, କେଉଁଠି ଚଢ଼େଇଗୁଡ଼ାଏ ଚେଁ ଚେଁ ହେଉଛନ୍ତି । ଏଣ୍ଟିଅସ ସାଥିରେ ଲଢ଼େଇ କରି ତାକୁ ହାଲିଆ ଲାଗୁଥିଲା । ସେ ସିଂହ ଛାଲଟା ପାରି ତା ଉପରେ ଶୋଇପଡ଼ିଲା ।

ବାମନମାନେ ଦେଖିଲେ, ଅସୁରଟା ଶୋଇଛି । ସେମାନେ ଗୋଟାଏ ବଡ଼ ସଭା କଲେ । ହଜାର ହଜାର ସଂଖ୍ୟାରେ ବାମନ ଜାତିର ଲୋକ ଆସି ସଭାରେ ଯୋଗ ଦେଲେ । ଏତେ ବଡ଼ ସଭା ସେ ରାଜ୍ୟରେ କେବେ ହୋଇନଥିଲା ।

ଜଣେ ବକ୍ତା ମଞ୍ଚ ଉପରକୁ ଯାଇ ଉଚ୍ଚ ସ୍ୱରରେ ବକ୍ତୃତା ଦେଲେ, "ଭାଇମାନେ, ଆଜ ଏଠାରେ ଯେଉଁ ଦୁଃଖଦାୟକ ଘଟଣା ଘଟିଗଲା, ତାହା ଆପଣମାନେ ସ୍ୱଚକ୍ଷୁରେ ଦେଖିଛନ୍ତି । ଆମର ବଡ଼ ଭାଇ ଏଣ୍ଟିଅସ ଏଇଠାରେ ମରି ପଡ଼ିଛନ୍ତି । ଗୋଟାଏ ବିଦେଶୀ ଶତ୍ରୁ ଅନ୍ୟାୟ ଯୁଦ୍ଧରେ ତାଙ୍କୁ ହତ୍ୟା କରିଛି । ଏବେ ସେହି ଦୁଷ୍ଟ ଶତ୍ରୁ ବିଜୟ ଗର୍ବରେ ଏଠାରେ ଶୋଇ ରହିଛି । ଆମେ ଯେଉଁ ପୃଥିବୀର ସନ୍ତାନ, ଏଣ୍ଟିଅସ ମଧ୍ୟ ସେହି ପୃଥିବୀର ସନ୍ତାନ । ସେ ଥିଲେ ଆମର ବଡ଼ଭାଇ । ସେ ଚିରକାଳ ଆମ ସହିତ ଶାନ୍ତିରେ ରହି ଆସିଥିଲେ । ଆପଣମାନେ ଜାଣନ୍ତି, ଝଡ଼ ବର୍ଷା ବେଳେ ସେ ଛିଡ଼ାହୋଇ ଆମ ସହରକୁ କେତେଥର ରକ୍ଷା କରିଅଛନ୍ତି । ଆମର ପିଲାମାନେ ତାଙ୍କ ବାଳରେ, ତାଙ୍କ ଦାଢ଼ିରେ ଖେଳି କେତେ ଆନନ୍ଦ ପାଉନଥିଲେ ? ତାଙ୍କର ଆମ ପ୍ରତି ଦୟା ଭୁଲି ହେବ

ନାହିଁ । କାଳେ କେହି ତାଙ୍କ ପାଦ ତଳେ ଚପି ହୋଇଯିବ, ଏହି ଭୟରେ ସେ ତଳକୁ ଚାହିଁ ଚାହିଁ ଧୀରେ ଧୀରେ ପାଦ ପକାଉ ଥିଲେ । ତାଙ୍କର ଏ ଦୟା, ଏ ସ୍ନେହ ପାଇଁ ଆମେ ତାଙ୍କ ପ୍ରତି କଅଣ କରିଛୁ ? ଗୋଟାଏ ଶତ୍ରୁ ଆସି ତାଙ୍କର ପ୍ରାଣ ନେଲା । ସେ ଶତ୍ରୁକୁ ଛାଡ଼ିଦେଲେ ଆମର ପାପ ଶତଗୁଣ ହେବ । ତାଙ୍କ ମୃତ୍ୟୁର ପ୍ରତିଶୋଧ ନେବାକୁ ପଡ଼ିବ । ଦୋଷୀକୁ ଦଣ୍ଡ ଦେବାକୁ ହେବ । ଆମ ଦେଶରେ ବୀରର ଅଭାବ ନାହିଁ । ଶତ୍ରୁ ପାଖରେ ଆମ ଜାତି କେବେ ମୁଣ୍ଡ ନୁଆଇଁ ନାହିଁ । ଆସ, ଆଜି ଆମ ସାହସର, ଆମ ବୀରତ୍ୱର ପରିଚୟ ଦେବା । ଶତ୍ରୁକୁ ଧ୍ୱଂସ କରିବା । ତାର ହାଡ଼ ଆମ ଏଣ୍ଟିଅସର ହାଡ଼ ପାଖରେ ଜମାହୋଇ ର[illegible] ଆମର ଏଇ କୀର୍ତ୍ତି ସୁନାର ଅକ୍ଷରରେ ଆମ ଇତିହାସରେ ଲେଖା ହୋଇ ରହିବ । ଆମର ପୁଅ ନାତିମାନେ ତାହା ପଢ଼ି ପୂର୍ବପୁରୁଷଙ୍କ ବୀରତ୍ୱ କଥା ଜାଣିବେ ।"

ସଭାରେ ବାରମ୍ବାର ହାତ ତାଳି ଶୁଣାଯାଉଥାଏ । ବକ୍ତା ଅଣ୍ଟାରୁ ନିଜର ତରବାରୀ ବାହାର କରି ମୁଣ୍ଡ ଉପରକୁ ଟେକି କହିଲେ, "ଆମର ତରବାରୀ ଆଜି ଶତ୍ରୁର ରକ୍ତ ଚାହେଁ । ଆସ, ସମସ୍ତେ ମିଶି ଶତ୍ରୁକୁ ଶେଷ କରିବା । ଯୁଦ୍ଧ କରି ତାକୁ ମାରିବା ନହେଲେ ମରିବା । ଆପଣମାନେ ଯଦି ଭୟ କରି ଯୁଦ୍ଧକୁ ବାହାରିବେ ନାହିଁ, ତେବେ ମୁଁ ଏକାକୀ ଏହି ଖଣ୍ଡାଧରି ସେ ଦୁଷ୍ଟ ସଙ୍ଗେ ଯୁଦ୍ଧ କରିବ । ଧର୍ମର ଜୟ ସୁନିଶ୍ଚିତ ।"

ଏହି ବକ୍ତାଙ୍କ ପରେ ଆଉ କେତେ ଜଣ ବକ୍ତୃତା ଦେଲେ । କେହି କେହି ମତ ଦେଲେ ଯେ ଶୋଇଥିବା ବେଳେ ତାକୁ ଆକ୍ରମଣ କରି ମାରିବାକୁ ହେବ । ଆଉ କେତେକ ଏଥିରେ ଆପତ୍ତି କରି କହିଲେ, ଶତ୍ରୁ ଶୋଇଥିବା ବେଳେ ତାକୁ ଆକ୍ରମଣ କରିବା

ଅନ୍ୟାୟ୍ୟ । ଆଗେ ତାକୁ ଉଠାଇ ତା ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିବା । ମାତ୍ର ଅଧିକାଂଶ ଲୋକଙ୍କର ମତ ହେଲା, "ସେ ଅନ୍ୟାୟ୍ୟ ଯୁଦ୍ଧରେ ଏଣ୍ଟିଅସର ପ୍ରାଣ ନେଇଛି । ତେଣୁ ସେ ଶୋଇଥିଲା ବେଳେ ତାକୁ ଆକ୍ରମଣ କରି ମାରିବା ଅନ୍ୟାୟ୍ୟ ହେବନାହିଁ ।"

ସଙ୍ଗେ ସଙ୍ଗେ ଆକ୍ରମଣର ବ୍ୟବସ୍ଥା ହେଲା । କୋଡ଼ିଏ ହଜାର ସୈନ୍ୟ ଧନୁରେ ଶର ଯୋଖି ଆଗେ ଆଗେ ଚାଲିଲେ । ଆଉ କୋଡ଼ିଏ ହଜାର ସୈନ୍ୟଙ୍କୁ ଆଦେଶ ଦିଆଗଲା ଯେ ସେମାନେ ନଡ଼ା କୁଟାର ବୋଝ ନେଇ ଆଗ ସେ ଅସୁରର ନାକ ମୁହଁ ବନ୍ଦ କରିଦେବେ । ତାହାହେଲେ ସେ ନିଶ୍ୱାସ ନେଇ ପାରିବ ନାହିଁ । କିନ୍ତୁ ଏ ଆଦେଶ ପାଳନ କରିଯାଇ ପାରିଲା ନାହିଁ । ସୈନ୍ୟମାନେ ତାର ମୁହଁ ପାଖକୁ ଗଲା ମାତ୍ରେ ତାର ନିଶ୍ୱାସ ପବନରେ ଉଡ଼ିଗଲେ । କୁଟାରେ ତାର ନାକ ମୁହଁ ବନ୍ଦ କରିବେ କେତେବେଳେ ?

ନେତାମାନେ ମିଳି ପୁଣି ଏକ ସଭା କଲେ । ଏଥିରେ ସ୍ଥିର ହେଲା ଯେ ସୈନ୍ୟମାନେ ରାଜ୍ୟର କାଠିକୁଟା, ଶୁଖିଲା କାଠ ଆଦି ସଂଗ୍ରହ କରି ଆଣନ୍ତୁ । ସେ ସବୁ ଶତ୍ରୁର ମୁଣ୍ଡ ଚାରିପାଖେ ଜମା କରାଗଲା ପରେ ସେଥିରେ ନିଆଁ ଲଗାଇ ଦିଆଯିବ । ନିଆଁର ଉତ୍ତାପରେ ସେ ସିଝି ହୋଇ ମରିବ । ଶତ୍ରୁ ଉଠିବାକୁ ଚେଷ୍ଟା କଲେ ସବୁ ସୈନ୍ୟ ଏକାବେଳକେ ତା ଉପରକୁ ଶର ମାରିବେ ।

ଏହିପରି ବ୍ୟବସ୍ଥା ହେଲା । ସୈନ୍ୟମାନେ ବହୁତ କାଠି, କୁଟା ପ୍ରଭୃତି ଆଣି ହରକ୍ୟୁଲସର ମୁଣ୍ଡ ଚାରିପାଖେ ଜମା କଲେ । ଖୁବ୍ ସାହସୀ କେତେ ଜଣ ସୈନ୍ୟ ଯାଇ ସେଥିରେ ନିଆଁ ଲଗାଇ ଦେଲେ । ଏ ଉପାୟଟା ଯେ ସୁଚିନ୍ତିତ ଏଥିରେ ସନ୍ଦେହ ନାହିଁ— ନିଆଁ ଜଳିଉଠି ତାକୁ ପୋଡ଼ିଦେବ । ମାତ୍ର ଏଥିରେ ଗୋଟାଏ

'କନ୍ଦ' ରହିଗଲା । ହରକ୍ୟୁଲସ ଚୁପ୍ କରି ଶୋଇ ରହି ଘୋଡ଼ ଦେବାକୁ ପ୍ରସ୍ତୁତ ନଥିଲା ।

ନଅଁ ର ଖାଡ ତା ଦେହରେ ବାଜିଲାକ୍ଷଣି ସେ ଉଠି ବସିପଡ଼ିଲା । ସେ ଚାରିଆଡ଼କୁ ଚାହିଁ କହିଲା, "ଏ କଅଣ ?"

ଏଣେ କୋଡ଼ିଏ ହଜାର ସୈନ୍ୟ ଏକ ସଙ୍ଗରେ ହରକ୍ୟୁଲସର ମୁହଁ ଉପରକୁ ଶର ମାରିଲେ । କିନ୍ତୁ ତାର ମୋଟା ଚମଡ଼ା ଭିତରକୁ ଶର ପଶି ପାରିଲା ନାହିଁ । ଗୋଟାଏ ଦୁଇଟା ତା ଦେହରେ ଲାଗି ରହିଲା ମାତ୍ର । ଦେହରେ କଣ୍ଟା ବାଜିଗଲା ପରି ସେ ଅନୁଭବ କଲା ।

ସହସ୍ର ସହସ୍ର ବାମନ ସୈନ୍ୟଙ୍କ କଣ୍ଠରୁ ଶୁଣାଗଲା, "ଦଇତାନ, ତୁ ଆମ ଭାଇ ଏଣ୍ଟିଅସର ପ୍ରାଣ ନେଇଛୁ । ଆମେ ତାର ପ୍ରତିହିଂସା ନେବୁ । ଆମର ବୀର ଜାତି ଏ ଅପମାନ ସହି ନ ପାରେ, ଆମେ ଯୁଦ୍ଧ ଘୋଷଣା କରୁଛୁ ।"

ହରକ୍ୟୁଲସ କାନ ଡେରି ସବୁ ଶୁଣିଲା । ଚାରିଆଡ଼କୁ ଚାହିଁ ପ୍ରଥମେ କିଛି ଦେଖି ପାରିଲା ନାହିଁ । ଟିକିଏ ତଳକୁ ଚାହିଁ ଦେଖିଲା, ତା ପାଦ ପାଖରେ ହଜାର ହଜାର ପୋକପରି ମନୁଷ୍ୟ; ଟିକି ଟିକି ଧନୁରେ ଶର ମାରିବାକୁ ତିଆର ହୋଇ ରହିଛନ୍ତି । ସେ ହାତ ବଢ଼ାଇ ଗୋଟାଏ ସୈନ୍ୟକୁ ଦୁଇ ଆଙ୍ଗୁଠିରେ ଧରି ନେଇ ତାର ବାଁ ହାତ ପାପୁଲି ଉପରେ ରଖିଦେଲା । ଦେଖିବାକୁ ଏହି ସୈନ୍ୟଟି ହେଉଛି ସେହି ବକ୍ତା, ଯିଏ ପ୍ରତିଜ୍ଞା କରିଥିଲା—ଏକାକୀ ଯୁଦ୍ଧ କରି ହରକ୍ୟୁଲସକୁ ମାରିବ ।

ହରକ୍ୟୁଲସ ବିସ୍ମିତ ହୋଇ ପଚାରିଲା, "ତୁ କଅଣ ଚାହୁଁ ?"

ବୀର ସୈନିକଟି ଉତ୍ତର କଲା, "ମୁଁ ତୋର ଶତ୍ରୁ । ଆମ ଜାତିର ବୀର, ଆମର ଭାଇ ଏଣ୍ଟିଅସକୁ ତୁ ବଧ କରିଛୁ ।

ଆମେ ତୋତେ ମାରିବୁ ବୋଲି ପ୍ରତିଜ୍ଞା କରୁଛୁ । ଆ, ମୋ ସଙ୍ଗେ ଯୁଦ୍ଧ କର ।”

ହକ୍'ଏଲସ ଏହି କଥା ଶୁଣି ଯେତିକି ବିସ୍ମିତ ହେଲା, ସେତିକି ଆନନ୍ଦିତ ହେଲା । ବାମନଟି ଦେହରେ ଶ୍ରେଷ୍ଠ ହୋଇଲେ ମଧ୍ୟ ତା ହୃଦୟଟି ଶ୍ରେଷ୍ଠ ନୁହେଁ । ତା ର ମଧ୍ୟ ସ୍ନେହ, ଶ୍ରଦ୍ଧା ସଙ୍ଗେ ପ୍ରତିହିଂସା, ବୀରତ୍ୱ ପ୍ରଭୃତି ଗୁଣ ଅଛି । ହକ୍'ଏଲସକୁ ହସମାଡ଼ିଲା ।

ସେ କହିଲା, “ଜୀବନରେ କେତେ ଆଶ୍ଚର୍ଯ୍ୟ କଥା ଦେଖିଛି । କାହାର ନଅଟା ମୁଣ୍ଡ, କାହାର ଛଅଟା ଗୋଡ଼, କାହାର ଦେହଟା ଘୋଡ଼ାର କିନ୍ତୁ ମୁଣ୍ଡଟା ମଣିଷର । କିନ୍ତୁ ଆଜି ଏ ଯେଉଁ ଛତରା ମନୁଷ୍ୟ ଦେଖିଲି, ସେପରି କେବେ ଦେଖି ନଥିଲି । ଦେହଟା ଶ୍ରେଷ୍ଠ ହୋଇଲେହେଁ ମନଟା ଶ୍ରେଷ୍ଠ ନୁହେଁ । ଅଚ୍ଛା କହିଲୁ, ତୋ ମନଟା କେତେ ବଡ଼ ?”

ସୈନ୍ୟଟି ଉତ୍ତର କଲା, “ମୋ ମନ ତୋ ମନଠାରୁ ଶ୍ରେଷ୍ଠ ନୁହେଁ, ବରଂ ବଡ଼ ।”

ଏତେ ସାମାନ୍ୟ ଜୀବଟିର ସାହସ, ବୀରତ୍ୱ ଓ ଉଦାରଭାବ ଦେଖି ହକ୍'ଏଲସର ମନ ତରଳିଗଲା । ସେ ଭାବିଲା, ‘ଶ୍ରେଷ୍ଠ ହେଲେବି ସେ ମଧ୍ୟ ମନୁଷ୍ୟ । ସେ ମୋର ଭାଇ ।’

ସେ ସୈନ୍ୟମାନଙ୍କ ପାଖେ ଆଣ୍ଠେଇ ପଡ଼ି କହିଲା, “ତୁମେ-ମାନେ ଏକ ବୀର ଜାତି । ପୃଥିବୀରେ ତୁମେଭଳି ବୀର ଜାତି ସମସ୍ତଙ୍କର ନମସ୍ୟ । ତୁମର ଶ୍ରେଷ୍ଠ ଦେହରେ ଯେଉଁ ବିରାଟ ମନ ଅଛି, ତାର ତୁଳନା ମିଳିବ ନାହିଁ । ତୁମର ଅନିଷ୍ଟ କରିବା ମୋ ପକ୍ଷରେ ଘୋର ଅନ୍ୟାୟ ହେବ । ମୁଁ ଅଜ୍ଞାନରେ ତୁମର ଭାଇଙ୍କୁ ମାରି ଯେଉଁ ଅନ୍ୟାୟ କରିଛି, ସେଥିପାଇଁ କ୍ଷମା ମାଗୁଛି । ତୁମେମାନେ ଶାନ୍ତିରେ ରହ । ମୁଁ ତୁମ ଦେଶ ଛାଡ଼ି ଚାଲିଯିବି । କାଳେ କାହାର ଉପରେ

ପାଦ ପଡ଼ିଯିବ, ସେଥିପାଇଁ ସାବଧାନ ରହିବ । ମୋତେ ବିଦାୟ ଦିଅ । ମୁଁ ଏଣିକି ତୁମର ବନ୍ଧୁ, ଶତ୍ରୁ ନୁହେଁ ।"

ହର୍କୁଲିସ ଗଦା ଧରି ଯିବାକୁ ବାହାରିଲେ । ସେ ହସି ହସି କହିଲେ, "ଜୀବନରେ କେତେ ରାକ୍ଷସଙ୍କ ସଙ୍ଗେ ଯୁଦ୍ଧ କରି ଜିଣିଥିଲି; କିନ୍ତୁ ଆଜି ଏହି ଶ୍ରେଷ୍ଠ ଜୀବଙ୍କ ପାଖେ ପ୍ରଥମେ ହାରିଲି ।"



# ନର୍ସିସସ୍ ଓ ପ୍ରତିଧ୍ୱନି

ବହୁକାଳ ପୂର୍ବେ ପୃଥିବୀରେ ପରୀମାନେ ଥିଲେ । ସେମାନେ ଦେଖିବାକୁ ଭାରି ସୁନ୍ଦରୀ । ପରୀମାନଙ୍କ ମଧ୍ୟରେ ଅନେକ ଶ୍ରେଣୀ ଥିଲେ । ଏ ବଣରେ ରହୁଥିଲେ, କେହି ବା ଜଳରେ ରହୁଥିଲେ । ସେମାନଙ୍କର ଅଦ୍ଭୁତ ଶକ୍ତି ଥିଲା । ସେମାନେ ଇଚ୍ଛା ଅନୁସାରେ ଏଣେତେଣେ ଯାଇପାରୁଥିଲେ ।

'ପ୍ରତିଧ୍ୱନି' ବୋଲି ଗୋଟିଏ ପରୀ ଥିଲା । ସେ ଗପ କରିବାକୁ ବଡ଼ ଭଲ ପାଉଥିଲା । ତା ପାଟି କେବେବେଳେ ହେଲେ ବନ୍ଦ ନ ଥାଏ । ତା ମନରେ ଭାରି ଗର୍ବ । ଥରେ ସେ ସ୍ୱର୍ଗର ଜୁନୋ ନାମକ ଏକ ଦେବୀଙ୍କୁ ଅପମାନ ଦେଲା । ଜୁନୋ ଏଥିରେ ରାଗି ତାକୁ ଅଭିଶାପ ଦେଇ କହିଲେ, "ତୁ ଏତେ ଗପ କରୁଛୁ ଯେ ଟିକିଏ ଭଦ୍ର ଭାବରେ କଥାବାର୍ତ୍ତା କରୁନାହୁଁ । ଏଣିକି ଶେଷ କଥା ପଦକ ଛଡ଼ା ଆଉ କିଛି ତୁ କହି ପାରିବୁ ନାହିଁ । ଏଇ ହେଲା ତୋର ଦଣ୍ଡ । ତୋର ନିଜର କଥା କହିବାର ଶକ୍ତି ରହିବ ନାହିଁ, ଖାଲି ଅନ୍ୟ ଲୋକର କଥା ଶୁଣି ତା କଥାର ଶେଷ ପଦକ କହିବୁ । ତୋତେ କେହି ନ ଡାକିବା ଯାଏ ତୁ ଲୁଚି ରହିଥିବୁ । ମୁଁ ତୋତେ ଆଉ ଦେଖିବାକୁ ଚାହେଁ ନାହିଁ । ଯା, ଏଣିକି ତୁ ପାହାଡ଼ ପର୍ବତରେ ରହିବୁ । ମୋତେ ଦେଖା ଦେବୁ ନାହିଁ ।"

ଦେବୀଙ୍କର ଅଭିଶାପ ସଙ୍ଗେ ସଙ୍ଗେ ଫଳିଲା । ଜୁନୋଙ୍କ କଥା ସରିଲାକ୍ଷଣି ପ୍ରତିଧ୍ୱନି କହିଲା, "ନାହିଁ" । ସେ ଯାଇ ନିର୍ଜନ ପାହାଡ଼ରେ ରହିଲା ।

ପାହାଡ଼ରେ ସେ ଲୁଚି ରହିଥାଏ । ସାଙ୍ଗ ସାଥୀମାନଙ୍କ କଥା ତାର ମନେ ପଡ଼ିଲେ ସେ କାନ୍ଦି ଉଠେ । ବେଳେ ବେଳେ କାଠୁରିଆମାନେ ପାହାଡ଼କୁ କାଠ କାଟିବାକୁ ଆସନ୍ତି । ସେମାନଙ୍କ ସଙ୍ଗରେ ସେ କଥାବାର୍ତ୍ତା ହେବାକୁ ମନ କରେ । କିନ୍ତୁ ତାର ତୁଣ୍ଡରୁ କଥା ବାହାରେ ନାହିଁ । ଦୈବାତ୍ କୌଣସି କାଠୁରିଆ କିଛି କହିଲେ, ପ୍ରତିଧ୍ୱନି କେବଳ ତା'କଥାର ଶେଷ ପଦଟି କହେ । କେତେ କଥା କହିବ ବୋଲି ସେ ମନରେ ଯାଚେ; କିନ୍ତୁ କିଛି କହିପାରେ ନାହିଁ ।

ଦିନେ ପ୍ରତିଧ୍ୱନି ମନ ଦୁଃଖରେ ଏକୁଟିଆ ବସିଛି; ଏହି ସମୟରେ ନର୍ସିସସ୍ ବୋଲି ଏକ ସୁନ୍ଦର ଯୁବକ ପାହାଡ଼ ଉପରକୁ ଉଠିଲେ । ଯୁବକଙ୍କର ମୁଣ୍ଡରେ ସୁନ୍ଦର କେଶ, ଆଖିରେ ଉଜ୍ଜ୍ୱଳ ଜ୍ୟୋତି, ଦେହରେ ପ୍ରଚୁର ଶକ୍ତି । ତାଙ୍କୁ ଦେଖିଲେ କୌଣସି ଦେବତା ବୋଲି ଭ୍ରମ ହେବ । ଏଭଳି ସୁନ୍ଦର ପୁରୁଷଟିଏ ଦେଖିଲାକ୍ଷଣି ପ୍ରତିଧ୍ୱନି ତାଙ୍କୁ ଭଲ ପାଇଲା, ତାଙ୍କ ସାଥିରେ କଥାବାର୍ତ୍ତା ହେବାକୁ ମନ କଲା ।

ଜୁନୋ ଅଭିଶାପ ଦେଇଥିଲେ ଯେ ତାକୁ କେହି ନ ଡାକିବା ଯାଏ ସେ ଦେଖା ଦେବ ନାହିଁ । ତେଣୁ ସେ ନର୍ସିସସ୍‌ଙ୍କୁ ଦେଖି ତାଙ୍କ ପଛେ ପଛେ ବୁଲିଲା । ସେ ଭାବିଲା, "ମୋ ପାଦର ଶବ୍ଦ ଶୁଣି ସେ ମୋତେ ନିଶ୍ଚୟ ଡାକିବେ । ସେତିକିବେଳେ ମୁଁ ବାହାରି ପଡ଼ି ତାଙ୍କୁ ଦେଖା ଦେବି ।"

ପ୍ରତିଧ୍ୱନି ଗଛପତ୍ର ଉହାଡ଼ରେ ଲୁଚି ଲୁଚି ନର୍ସିସସ୍‌ଙ୍କ ପଛେ ପଛେ ଚାଲିଥାଏ । ବେଳେବେଳେ ଉଙ୍କିମାରି ତାଙ୍କ ସୁନ୍ଦର ରୂପକୁ ଚାହିଁ ଦେଉଥାଏ । କିନ୍ତୁ ସମୟ ପରେ ନର୍ସିସସ୍ ସନ୍ଦେହ କଲେ, ତାଙ୍କ ପଛରେ କିଏ ଜଣେ ଆସୁଛି । ସେ ବଡ଼ ପାଟି କରି ଡାକିଲେ, "ମୋ ପଛରେ ଆସୁଛି କିଏ ?" ପ୍ରତିଧ୍ୱନି କେବଳ କହିଲା, "କିଏ" ?

ନର୍ସିସସ୍ ପୁଣି ପଚାରିଲେ, "କିଏ ମୋ ପଛରେ ଲୁଚି ଲୁଚି ଆସୁଛି ?" ଉତ୍ତର ମିଳିଲା 'ଆସୁଛି' । ନର୍ସିସସ୍ ଏଥର ଠିକ୍ ଜାଣିଲେ ଯେ ତାଙ୍କ ପଛରେ କେହି ଜଣେ ଆସୁଛି । ସେ କହିଲେ, "ମୋ ପାଖକୁ ଆସ । ପ୍ରତିଧ୍ୱନି 'ଆସ' ଏତିକି କହି ନର୍ସିସସ୍‌ଙ୍କ ପାଖକୁ ଚାଲିଆସିଲା ।

ପ୍ରତିଧ୍ୱନି ଆନନ୍ଦରେ ନର୍ସିସସ୍‌ଙ୍କୁ କୁଣ୍ଢାଇବାକୁ ବାହାରିଛି, ଏହି ସମୟରେ ସେ ପ୍ରତିଧ୍ୱନିକୁ ଦୂରକୁ ଠେଲି ଦେଲେ । ନର୍ସିସସ୍ ବଡ଼ ଗର୍ବୀ ଥିଲେ, ସେ ନିଜ ଛଡ଼ା ଆଉ କାହାରି କଥା ଭାବୁ ନ ଥିଲେ । ଏଥିପୂର୍ବରୁ ସେ ଲକ୍ଷ୍ୟ କରିଥିଲେ ଯେ 'ପ୍ରତିଧ୍ୱନି' ତାଙ୍କ କଥାର ଶେଷ ପଦଟି ଛଡ଼ା ଆଉ କିଛି କହୁ ନ ଥିଲା । ତେଣୁ ସେ ତାଙ୍କୁ ଥଟ୍ଟା କରୁଥିଲା ବୋଲି ସେ ମନେ ମନେ ସ୍ଥିର କରି ନେଇଥିଲେ । ପ୍ରତିଧ୍ୱନି ବିକଳ ହୋଇ ତାଙ୍କ ଆଡ଼କୁ ଚାହିଁଲା; ମାତ୍ର ସେ ବିକଳ ଚାହାଣିରେ ନର୍ସିସସ୍‌ଙ୍କ ମନ ଆଦୌ ତରଳିଲା ନାହିଁ ।

ସେତେବେଳକୁ ନର୍ସିସସ୍‌ଙ୍କୁ ଖୁବ୍ ଶୋଷ କରୁଥିଲା । ପାଖରେ ଗୋଟିଏ ନିର୍ମଳ ଜଳର ପୋଖରୀ ଦେଖି ସେ ତା ପାଖକୁ ଯିବାକୁ ବାହାରିଲେ । ଯିବାବେଳେ ସେ ବଗିଯାଇ ପ୍ରତିଧ୍ୱନିକୁ କହିଲେ, "ଏଠାରୁ ବାହାରିଯାଅ" । ପ୍ରତିଧ୍ୱନି ଉତ୍ତର କଲା 'ଯାଅ' ।

ଅନ୍ୟ ଉପାୟ ନ ଦେଖି ପ୍ରତିଧ୍ୱନି ପାହାଡ ଉପରକୁ ଫେରିଯାଇ ନିଜ ଜାଗାରେ ଲୁଚି ରହିଲା । କାହାରିକୁ ମୁହ ଦେଖାଇବା ପାଇଁ ତାର ସାହସ ହେଲା ନାହିଁ ।

ଏବେ ପ୍ରତିଧ୍ୱନି ମହା କଷ୍ଟରେ ପଡ଼ିଲା । ସେ ନିଜ ମନର ଦୁଃଖ ନର୍ସିସସ୍‌ଙ୍କୁ ଜଣାଇବାକୁ ଇଚ୍ଛା କଲା; କିନ୍ତୁ ଜଣାଇବ କିପରି ? ତାର ତ ଆଉ ନିଜେ କିଛି କହିବାର ଶକ୍ତି ନାହିଁ । ସେ ଯେ ଅନ୍ୟର କଥାର ଖାଲି ଶେଷ ପଦକ ଛଡ଼ା ଆଉ କିଛି କହି ପାରୁନି, ତାହାର କାରଣ ନର୍ସିସସ୍‌ଙ୍କୁ ବୁଝାଇଦେବା ପାଇଁ ତାର ଭାରି ଇଚ୍ଛା, କିନ୍ତୁ ତା ମଧ୍ୟ ପାରୁନି । ସେ ମନେ ମନେ ନର୍ସିସସ୍‌ଙ୍କୁ ଅଭିଶାପ ଦେଲା, "ମୁଁ ତୋତେ ଏତେ ଭଲ ପାଏ, ମାତ୍ର ତୁ ମତେ ଘୃଣାରେ ଠେଲି ଦେଇ ଚାଲିଗଲୁ । ମୋ ମନର କଷ୍ଟ ତୁ ଟିକିଏ ବୁଝିଲୁ ନାହିଁ । ତୋର ଏ ଗର୍ବର ଦଣ୍ଡ ଭୋଗକର । ମୁଁ ତୋର ରୂପ ଦେଖି ତୋତେ ଭଲ ପାଇଥିଲି । ତୁ ଆପଣା ଛଡ଼ା ଆଉ କାହାରି କଥା ଚିନ୍ତା ନ କରି ମୋତେ ତଡ଼ି ଦେଲୁ । ତେଣୁ ତୁ ନିଜ ଛଡ଼ା ଅନ୍ୟ କାହାରିକୁ ଭଲ ପାଇପାରିବୁ ନାହିଁ । ତୁ ଯେପରି ମୋତେ ଘୃଣା କଲୁ, ଲୋକେ ତୋତେ ସେହିପରି ଘୃଣା କରନ୍ତୁ ।"

ପ୍ରତିଧ୍ୱନି ମନେକଲା, ଏପରି ହେଲେ ନର୍ସିସସ୍ ମୋ ମନର କଷ୍ଟ ଜାଣିପାରିବେ; ହୁଏତ ମୋ ପାଖକୁ ଫେରିଆସିବେ ।

ନର୍ସିସସ୍ ପାଣି ପିଇବା ପାଇଁ ପୋଖରୀ କୂଳକୁ ଗଲେ । ପୋଖରୀର ପାଣି ଦର୍ପଣ ପରି ନିର୍ମଳ । ସେ ପାଣିକୁ ଚାହିଁ ଦେଖିଲେ ଗୋଟିଏ ସୁନ୍ଦର ମୁହଁ ତାଙ୍କରି ଆଡ଼କୁ ଚାହିଁ ରହିଛି । ଏଡ଼େ ସୁନ୍ଦର ମୁହଁ ସେ ଏଥିପୂର୍ବରୁ କେବେ ଦେଖି ନଥିଲେ । କି ସୁନ୍ଦର ଢଳ ଢଳ ଆଖି ! କୁଞ୍ଚକୁଞ୍ଚିଆ ବାଳଗୁଡ଼ିକ କପାଳ ଉପରେ ଉଡ଼ୁଛି । ସେ

ମନେକଲେ, ଗୋଟିଏ ଜଳପରୀ ତାଙ୍କୁ ଚାହୁଁଛି । ତାଙ୍କ ମନଟା ଆନନ୍ଦରେ ପୂରିଗଲା । ସେ ମନେମନେ ତାଙ୍କୁ ଭଲପାଇ ବସିଲେ ।

ନର୍ସିସସ ଜାଣି ପାରିନଥିଲେ ଯେ ପାଣିରେ ଦେଖିଥିବା ମୁହଁଟି ତାଙ୍କ ନିଜର ପ୍ରତିବିମ୍ବ ଛଡ଼ା ଆଉ କିଛି ନୁହେଁ । ସେ କାଳରେ ମୁହଁ ଦେଖିବା ପାଇଁ ଦର୍ପଣ ନଥିଲା । ତେଣୁ ନର୍ସିସସ ଭଲ କରି ନିଜର ଚେହେରା ଦେଖି ନଥିଲେ । କେତେ ଥର ନିଜର ଚକଚକିଆ ଢାଲ ଉପରେ ସେ ନିଜର ପ୍ରତିବିମ୍ବ ଦେଖିଥିଲେ । ମାତ୍ର ତାହା ଅତି ଅସ୍ପଷ୍ଟ ଓ ବଙ୍କା ଟଙ୍କା । ସେହି ହେତୁରୁ ପୋଖରୀରେ ପ୍ରତିବିମ୍ବ ଦେଖି ତାକୁ ସେ ଚିହ୍ନି ପାରିଲେ ନାହିଁ ଓ ତାହା ଗୋଟିଏ ଜଳପରୀ ବୋଲି ମନେକଲେ । ପ୍ରତିଧ୍ୱନି ଯେପରି ନର୍ସିସଙ୍କୁ ଦେଖିଲାମାତ୍ରେ ଭଲ ପାଇଥିଲା, ନର୍ସିସସ୍ ମଧ୍ୟ ଠିକ୍ ସେହିପରି ଆପଣାର ପ୍ରତିବିମ୍ବକୁ ଦେଖିଲା ମାତ୍ରେ ଭଲପାଇଲେ ।

ସେ ଜଳପରୀକୁ ବହୁତ ଡାକିଲେ । କିନ୍ତୁ କିଛି ଉତ୍ତର ମିଳିଲା ନାହିଁ । ସେ ଡାକିଲାବେଳେ ପାଣିରେ ଜଳପରୀର ଓଠ କିଛି କହିଲା ପରି ହଲିଯାଏ, ମାତ୍ର ସେ ପରୀକୁ ଧରିବା ପାଇଁ ପାଣି ଭିତରେ ହାତ ବୁଡ଼ାଇଲାକ୍ଷଣି ପରୀ କୁଆଡ଼େ ଉଭେଇଯାଏ । ସେ ପୋଖରୀ କୂଳେ ବସି ରହିଲେ । ପାଣି ପୁଣି ସ୍ଥିର ହୋଇଗଲା । ନର୍ସିସସ ପୋଖରୀକୁ ଚାହିଁ ପୁଣି ସେହି ପରୀର ମୁହଁ ଦେଖିଲେ; ମାତ୍ର ଯେତେ-ଡାକିଲେ ସୁଦ୍ଧା ସେ କିଛି ଉତ୍ତର ଦେଲା ନାହିଁ ।

ସନ୍ଧ୍ୟା ହେଲା । ମାତ୍ର ନର୍ସିସସ୍ ପୋଖରୀ କୂଳ ଛାଡ଼ି ଅନ୍ୟ କୁଆଡ଼େ ଗଲେ ନାହିଁ । ସେ ଚାହୁଁଥିଲେ, ଜଳପରୀ ପୋଖରୀରୁ ବାହାରି ଆସି ତାଙ୍କ ପାଖରେ ବସୁ, କଥାବାର୍ତ୍ତା ହେଉ । କିଛି ସମୟ ପରେ ଚନ୍ଦ୍ର ଉଇଁଲା । ତାର କିରଣ ପାଣି ଉପରେ ପଡ଼ିଲା । ନର୍ସିସସ

ପାଣିକୁ ବୁହିଁ ଦେଖିଲେ ଆଗଭଳି ପଶୀ ତାଙ୍କ ଆଡ଼କୁ ଚାହିଁଛି । କିନ୍ତୁ ସେ ଯେତେ ଡାକିଲେ, କିଛି ଉତ୍ତର ମିଳିଲା ନାହିଁ ।

ପଶୀକୁ ପାଇ ନପାରି ନର୍ସିସସଙ୍କ ମନରେ ବଡ଼ ଦୁଃଖ । ସେ ଯେ ନିଜର ପ୍ରତିବିମ୍ବକୁ ଭଲ ପାଇଛନ୍ତି, ତାହା ଜାଣି ପାରିଲେ ନାହିଁ । ଖାଇବା ପିଇବା ସବୁ ଛାଡ଼ି ସେ ପୋଖରୀ କୂଳେ ବସି କେବଳ ସେହି ମୁହଁକୁ ଝୁରି ହେଲେ । ଦିନକୁ ଦିନ ତାଙ୍କର ଦେହ ଶୁଖି ଆସିଲା; କିନ୍ତୁ ସେ ସେହିପରି ପାଣିକୁ ଚାହିଁଥାନ୍ତି । ପଶୀର ମୁହଁ ମଧ୍ୟ ଏଣିକି ଶୁଖିଲା ଦିଶିଲା । ପଶୀର ଶୁଖିଲା ମୁହଁ ଦେଖି ତାଙ୍କ ମନରେ ଆହୁରି ଦୁଃଖ ହେଲା ।

ଏହିପରି କେତେଦିନ ଗଲା । ନର୍ସିସସଙ୍କର ଦେହ ଶୁଖି କଣ୍ଟା ରହିଲା । ମାତ୍ର ସେ ଯେତେ ଚେଷ୍ଟା କଲେ ସୁଦ୍ଧା ପଶୀ ପାଣିରୁ ବାହାରି ତାଙ୍କ ପାଖକୁ ଆସିଲା ନାହିଁ କି କିଛି କହିଲା ନାହିଁ ।

ଏବେ ପ୍ରତିଧ୍ୱନି ପୋଖରୀ ପାଖରେ ରହି ନର୍ସିସସଙ୍କର ଅବସ୍ଥା ଦେଖୁଥାଏ । ଯେତେବେଳେ ନର୍ସିସସ୍ ମନ କଷ୍ଟରେ 'ଆହା' ବୋଲି କହନ୍ତି, ପ୍ରତିଧ୍ୱନି ତୁଣ୍ଡରୁ ବାହାରି ପଡ଼େ 'ହା' । ନର୍ସିସସ୍‌ଙ୍କର ଏ କଷ୍ଟ ଦେଖି ତା ମନରେ ମଧ୍ୟ କଷ୍ଟ ହେଲା; ସେ ଅଭିଶାପ ଦେଇଥିଲା ବୋଲି ମନରେ କଷ୍ଟ କଲା । ମାତ୍ର ଏବେ ପ୍ରତିକାରର କିଛି ଉପାୟ ନଥିଲା ।

ନଖାଇ ନପିଇ ପୋଖରୀ କୂଳେ ପଡ଼ି ପଡ଼ି ଦିନେ ନର୍ସିସସ ଆଉ ଉଠି ପାରିଲେ ନାହିଁ କି ପାଣି ଭିତରକୁ ଚାହିଁ ପାରିଲେ ନାହିଁ । କିଛି ସମୟ ପରେ ତାଙ୍କର ପ୍ରାଣବାୟୁ ବାହାରିଗଲା ।

ସ୍ୱର୍ଗର ଦେବତାମାନେ ଦେଖିଲେ, ପୋଖରୀ କୂଳରେ ସୁନ୍ଦର ଯୁବକଟିଏ ମରି ପଡ଼ିଛି । ସେମାନେ ତାହାକୁ ଗୋଟିଏ ସୁନ୍ଦର ଧଳା ଫୁଲ କରିଦେଲେ । ଏହି ଫୁଲର ନାଁ ହେଉଛି ନର୍ସିସସ୍ ।

ଏବେ ମଧ୍ୟ ତୁମେ ପୋଖରୀ କୂଳରେ ନର୍ସିସସ ଫୁଲ ଦେଖି ପାରିବ । ଫୁଲ ପୋଖରୀ କୂଳରୁ ପାଣି ଭିତରକୁ ଓହଳିପଡ଼ି ନିଜର ପ୍ରତିବିମ୍ବକୁ ଦେଖୁଥିଲା ପରି ମନେହେବ ।

ନର୍ସିସସ ମରିଯିବାରୁ ପ୍ରତିଧ୍ୱନିର ମନରେ ଦୁଃଖ ଓ ଅନୁତାପ ହେଲା । ସେ ପୋଖରୀ କୂଳକୁ ଆସି ନର୍ସିସସଙ୍କର ଶେଷ ଚିହ୍ନ ସେହି ଧଳା ଫୁଲକୁ ଚାହିଁ ରହେ । କେବେ କେବେ ତାକୁ ହାତରେ ଆଉଁସି ଦିଏ ।

ପ୍ରତିଧ୍ୱନିର ମନରେ ଏତେ ଦୁଃଖ ହେଲା ଯେ ସେ ପର୍ବତ ଗୁହାରୁ ବାହାରି ଆଉ ପଦାକୁ ଆସିଲା ନାହିଁ । କେବଳ କାଠୁରିଆ ମାନେ ପର୍ବତକୁ ଆସି କିଛି କହିଲେ ସେମାନଙ୍କର ଶେଷ କଥା ପଦକ କହିଦିଏ ।

ନର୍ସିସସଙ୍କ କଥା ଚିନ୍ତା କରି କରି ପ୍ରତିଧ୍ୱନି ଦିନକୁ ଦିନ ଶୁଖି ଆସିଲା । ସେ ଖିଆ ପିଆ ଛାଡ଼ି ଦେଲା । ଶୁଖି ଶୁଖି ତାର ଦେହରେ କିଛି ରହିଲା ନାହିଁ—ଖାଲି ରହିଗଲା ତାର ସ୍ୱରଟି ।

ଲୋକେ କହନ୍ତି ପ୍ରତିଧ୍ୱନି ଏବେ ମଧ୍ୟ ବଞ୍ଚିଛି, ତାର ଦେହଟା ଜଡ଼େଇଯାଇଛି । ମାତ୍ର ସେ ସ୍ୱରଆଡ଼େ ଲୁଚି ରହିଛି । ପାହାଡ଼ରେ, ବଣରେ, ପୋଖରୀକୂଳରେ, କି ନିର୍ଜନ ପଡ଼ିଆରେ ତୁମେ ଯେବେ କିଛି କହିବ, ସେ ତୁମ କଥାର ଶେଷ ପଦଟି କହି ଉତ୍ତର ଦେବ । ତୁମେ ଯଦି କହିବ 'କିଏ ରେ', ପ୍ରତିଧ୍ୱନି ଉତ୍ତର କରିବ 'ରେ-ଏ-ଏ' ।

ଯାହାହେଉ ସେ ସୁନ୍ଦର ପରୀ ପ୍ରତିଧ୍ୱନିକୁ ଆଉ ତୁମେ ଦେଖିବାକୁ ପାଇବ ନାହିଁ । କେବଳ ତାର ସ୍ୱର ଶୁଣିପାରିବ ।

---

# ବିଶ୍ୱସାହିତ୍ୟ ଗ୍ରନ୍ଥମାଳା

୧। ଅଲଭର ଟ୍ୱିଷ୍ଟ
୨। ଗଲିଭରର ଭ୍ରମଣ କାହାଣୀ
୩। ମୃଚ୍ଛକଟିକ ଓ ମୁଦ୍ରାରାକ୍ଷସ
୪। ସମୁଦ୍ରର ନାବିକ
୫। ରାଜା ସଲୋମନଙ୍କ ସ୍ୱର୍ଣ୍ଣଖଣି
୬। ବିପ୍ଳବୀ
୭। ଛଦ୍ମ ସିପାହି
୮। ପମ୍ପେଇନଗରୀର ଶେଷଦିନ
୯। ରାଜପୁତ୍ର ଓ ଭିକାରି
୧୦ ଦୁଇଟି ନଗରୀର କାହାଣୀ
୧୧। ଡନ୍‌କ୍ୱିକ୍ସି
୧୨। ସାଇଲସ୍ ମାରନାର୍
୧୩। ଲୌହମୁଖାଧାରୀ ମଣିଷ
୧୪। ରବିନ୍‌ସନ୍ କ୍ରୁଶୋ
୧୫। ଅଶୀ ଦିନରେ ପୃଥିବୀ ପରିକ୍ରମଣ
୧୬। ଦୁଃଖିନୀ
୧୭। ବିରାଟ ଭାବନ
୧୮। ଶେକ୍‌ସପିଅର କାହାଣୀ (୧ମ)
୧୯। ,, ,, (୨ୟ)
୨୦। ,, ,, (୩ୟ)
୨୧। ଗ୍ରୀସଦେଶର ଉପକଥା
୨୨। ଅନେକ ଆଶା
୨୩। ସମୁଦ୍ର ଗର୍ଭରେ କୋଡ଼ିଏହଜାର ଲିଗ୍ ଭ୍ରମଣ
୨୪। ଟମ୍‌ସୟର୍
୨୫। ଟଲ୍‌ଷ୍ଟୟ କାହାଣୀ (୧ମ)
୨୬। ,, ,, (୨ୟ)
୨୭। ଚେକଭ୍ କାହାଣୀ
୨୮। ଆଇଭାନ୍‌ହୋ
୨୯। ଚନ୍ଦ୍ରକାନ୍ତ ମଣି
୩୦। ରତ୍ନଦ୍ୱୀପ
୩୧। ପ୍ରବାଳ ଦ୍ୱୀପ
୩୨। କଲାଶର
୩୩। ରବିନ୍ ହୁଡ୍
୩୪। ଫ୍ରାଙ୍କୋ
୩୫। ନିକୋଲାସ୍ ନିକଲ୍‌ବି
୩୬। ହେଂଜୁର ରୁପର୍ଟ୍
୩୭। ବଡଘର
୩୮। ଡେଭିଡ୍ କପରଫିଲ୍ଡ୍
୩୯। ହରୱେଲ
୪୦। କଲାଫୁଲ
୪୧। ଟମକକାଙ୍କ କେବିନ୍
୪୨। ଲୋରନାଡ଼ୋନ୍
୪୩। ଓମର କାହାଣୀ
୪୪। ଗର୍କି କାହାଣୀ